# ଦାୟବଦ୍ଧ

ଉପନ୍ୟାସ

ଲେଖିକା :
ସଂଯୁକ୍ତା ମହାନ୍ତି

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

ଦାୟବଦ୍ଧ
(ଉପନ୍ୟାସ)
ଲେଖିକା :
ସଂଯୁକ୍ତା ମହାନ୍ତି
ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ
କଟକ - ୭୫୩ ୦୦୨
ପ୍ରଥମ ପ୍ରକାଶନ : ୨୦୦୫
ପ୍ରଚ୍ଛଦ :
ବିଜୟ ପ୍ରଧାନ
ମୁଦ୍ରଣ :
ଏନ୍.ଏନ୍. ଗ୍ରାଫିକ୍ସ ଏବଂ
ସଂଗୀତା ପ୍ରିଣ୍ଟର୍ସ, କଟକ
ମୂଲ୍ୟ : ଟ. ୭୦-୦୦

DAYABADHA
(A Novel)
**Written by :**
Sanjukta Mohanty
**Publisher :**
Sri Gangadhar Tripathy
**Prachi Sahitya Pratisthan**
Binodbihari
Cuttack - 753 002
First Edition : 2005
**Cover Design :**
Bijay Pradhan
**Printers :**
N.N. Graphics &
Sangita Printers, Cuttack
**Price :** Rs.70-00

# ନିଜକଥା

୧୯୯୧ ମସିହାରେ ପ୍ରଥମ ଉପନ୍ୟାସ 'ସବୁଜ ଅନ୍ଧାର' ଲେଖିଥିଲି । ପରେ ଉପନ୍ୟାସ ଲେଖିବା କଥା ଭାବିଲେ ମଧ୍ୟ ଲେଖିନଥାଏ ।

୨୦୦୨ମସିହାର ଜୁନ୍ ମାସ ଶେଷ ସପ୍ତାହରେ ଗାଳ୍ପିକ କୃପାସାଗର ସାହୁଙ୍କ ଠାରୁ ଫୋନ୍ ପାଇଲି 'କୁସୁମିତା' ପୂଜା ସଂଖ୍ୟା ପାଇଁ ଉପନ୍ୟାସ ପଠାଇବାକୁ । କଥା କହିବାର ଭଙ୍ଗୀରେ ତାଙ୍କର ଏତେ ଦୃଢ଼ତା ଥିଲା, ଏତେ ପ୍ରତ୍ୟୟ ଥିଲା ଯେମିତିକି ମୁଁ ନିଶ୍ଚୟ ଲେଖିପାରିବି ।

ଅଫିସ୍‌ରୁ ଫେରି ମୁଁ ଏକ ପ୍ରକାର ଉଦ୍ଦୀପନା ଅନୁଭବ କରୁଥିଲି । ଏବଂ ସକାଳୁ ଆରମ୍ଭ କରିଦେଲି ଉପନ୍ୟାସ ଲେଖିବା । ସେତେବେଳକୁ ମୁଁ ଭୁବନେଶ୍ୱରର ଆଞ୍ଚଳିକ କାର୍ଯ୍ୟାଳୟରେ କ୍ରେଡିଟ୍ ଡିର୍ପାଟ୍‌ମେଣ୍ଟର ମ୍ୟାନେଜର୍ ହୋଇ ଜଏନ୍ କରିଥାଏ । ସହକର୍ମୀ ଜଣେ ବୁଝାଇଥାନ୍ତି, ଏ ବିଭାଗରେ ବହୁତ ପଢ଼ିବାକୁ ହେବ । କ'ଣ କରିବି ଭାବି ଯଥା ସମ୍ଭବ ଚୁପ୍ ରହି ସନ୍ଧ୍ୟାରେ ଘରକୁ ଫେରେ ଆଉ ଉପନ୍ୟାସ ଲେଖେ । ଦୁଇ ମାସ ବିତିଯାଇଥିଲେ ବି ଶେଷ ହୋଇନଥାଏ । ଭାବିଲି ଶନିବାର ଘରକୁ ନ ଯାଇ ଭୁବନେଶ୍ୱରରେ ରହି ଲେଖିବି । ଶନିବାରିଆ ଲେଖି ଲେଖି ସନ୍ଧ୍ୟା ବେଳକୁ ଭାବିଲି କାଲି ସକାଳୁ କଟକ ଚାଲିଯିବି । ରାତିରେ ବିଶ୍ରାମ ନେଇଯାଏ । ଫୋନ୍ । କୃପାସାଗର ସାହୁଙ୍କର । ''ମୁଁ କଲିକତାରୁ ଆସିଛି । ଉପନ୍ୟାସଟା ସାଙ୍ଗରେ ନେଇଯିବି । ସରିଲାଣି ?'' ଏମିତି ଚାପ ଅନୁଭବ କଲିଯେ ଶୋଇବି କ'ଣ ଉଠି ଲେଖିଲି । ଭାବିଲି ୟୁନିଭରସିଟି ପରୀକ୍ଷା ବେଳେ ମୁଁ ଏତେ ସମୟ ପାଠ ପଢ଼ି ନ ଥିଲି । ଉପନ୍ୟାସ ତଥାପି ସରିଲା ନାହିଁ । ତା'ପର ଦିନ କୃପାସାଗର ସାହୁଙ୍କୁ ଦେଖାଇଲି । ସେ କିଛି ଅଂଶ କାଟି ଦେବାକୁ କହିଲେ । ପରେ 'କୁସୁମିତା' ପାଇଁ ଉପନ୍ୟାସଟି ପଠାଇଲି । କଟିଯାଇଥିବା ଅନ୍ୟ ଅଂଶକୁ ନେଇ ଆଉ ଗୋଟିଏ ଉପନ୍ୟାସ ଲେଖିଲି 'ଦାୟବଦ୍ଧ' । ୨୦୦୩ ମସିହାର ପୂଜା ସଂଖ୍ୟା 'ସମାରୋହ'ରେ ତା' ପ୍ରକାଶିତ ହୋଇଥିଲା । କୃପାସାଗର ସାହୁଙ୍କର ପ୍ରେରଣା, ଉତ୍ସାହ ପାଇ ଦୁଇଟି ଉପନ୍ୟାସ ଲେଖିବା ସମ୍ଭବ ହୋଇପାରିଲା । ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । 'ସମାରୋହ' ପୂଜା ସଂଖ୍ୟା ୨୦୦୩ରେ ପ୍ରକାଶ ପାଇଥିବାରୁ ସଂପାଦିକା ଶ୍ରୀମତୀ ଶୈଳରାଣୀ ମିଶ୍ରଙ୍କୁ ଧନ୍ୟବାଦ ଜଣାଉଛି ।

ଉପନ୍ୟାସଟି ଛପାଇବାକୁ ସାଦରେ ଗ୍ରହଣ କରିଥିଲେ ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ଗଙ୍ଗାଧର ତ୍ରିପାଠୀ । ଆହୁରି ଆଗ୍ରହ ପ୍ରକାଶ କରିଥିଲେ ଶ୍ରୀଯୁକ୍ତ ଶକ୍ତି ପ୍ରସାଦ ତ୍ରିପାଠୀ ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

**ସଂଯୁକ୍ତା ମହାନ୍ତି**

## ( ୧ )

କେତେ ରାତି ହେବ କେଜାଣି ! ନିଦ ଲାଗୁନଥିଲା ଆଦିତ୍ୟଙ୍କୁ । ମଶାରି ଟେକି ବାହାରି ଆସିଲେ ବାରଣ୍ଡାକୁ । ବାହାରେ ନୀରବିତ ଗଭୀର ରାତ୍ରି । ଗୋଟାଏ ଗୋଟାଏ କୁକୁରଙ୍କର ବିକଟାଳ ଚିତ୍କାର ଶୁଣାଯାଉଥିଲା । କଳା ମଚ୍‌ମଚ୍ ହୋଇ ଦିଶୁଥିଲା କୃଷ୍ଣପକ୍ଷର ଆକାଶ । ନକ୍ଷତ୍ରମାନ ଦାଉଦାଉ ଜଳୁଥିଲେ ଅନନ୍ତ ଦୂରତାରେ । ଛାୟାପଥ ଏସବୁ ରାତିରେ ସ୍ୱଷ୍ଟ । ସେ ଅଣ୍ଟାରୁ ବିଡ଼ିଟିଏ ବାହାରକଲେ । ଅଧା ଫୁଙ୍କା ହୋଇଛି । ଦିଆସିଲି ଥୁଆ ହୋଇଛି କାଠ କଡି ଉପରେ । ସେକଥା କେହି ଜାଣନ୍ତି ନାହିଁ । ଲୁଚେଇ ରଖିଥାନ୍ତି । ବିଡିଟି ଲଗେଇସାରି ପୁନଶ୍ଚ ରଖିଲେ । ଦି କଳ ଟାଣିଛନ୍ତି । ବିଡ଼ିଟି ଲିଭିଗଲା । ବୋଧହୁଏ ସରିଗଲା । ଟାଣିବାର ଲୋଭ ତାଙ୍କର ଅନେକ । ହେଲେ ସରିଯିବା ହିଁ ଯେମିତି ନିୟତି । ଇଏ ଗୋଟାଏ ବଦାଭ୍ୟାସ । ବାରବର୍ଷ ବୟସରୁ ବିଡ଼ି ଟାଣିବା । ଏବେ ଛାଡ଼ି ହେଉଛି କେତେକେ । ଅଧାଶୁଆ ଅଧାଚେଇଁବା ଭିତରେ କେତେବେଳେ ଶୋଇ ଯାଇଛନ୍ତି । ଆଜିକାଲି ଏମିତି ହୁଏ । ଠିକ୍ ଶୋଇ ହୁଏନା ।

ନିଦ ତାଙ୍କର ଭାଙ୍ଗିଗଲା କ'ଣ ଗୋଟାଏ ଶବ୍ଦରେ । ବାହାରକୁ ଚାହିଁଲେ । ଏବେ ବି ଭୋରର ଆକାଶରେ ରଙ୍ଗ ଲାଗିବାକୁ ଅନେକଟା ବାକି । କାଠଯୋଡ଼ିର ପଥର ବଂଧ ଉପରେ ଟ୍ରକର ଭାରିଶବ୍ଦ । ଶବ୍ଦ ନୁହେଁତ ଯେମିତି ମନେ ହେଉଛି ଭୟଙ୍କର ଗୋଟାଏ କଂକ୍ରିଟର ରାକ୍ଷସ ହାତଗୋଡ଼ ଲମ୍ୱାଇ ଶୋଇ ପଡ଼ୁଛି ସହର ଉପରେ । ତା'ର ଭାରରେ ଶ୍ୱାସରୁଦ୍ଧ ହୋଇଯାଉଛି ଏଇ ଛୋଟିଆ ନଈକୂଳିଆ ସହରଟି । ଲମ୍ୱିଯାଉଛି ତାର ପାଦ, ହାତ ସହର ଡେ଼ଇଁ ଆହୁରି ଅନେକ ଦୂରକୁ । ସେ ଭାରରେ ଚାପି ହୋଇ ପଡ଼ୁଛି ସହର ତଳି ଗଛବୃକ୍ଷ । ତା' ଜାଗାରେ ଦିଶୁଛି ଖାଲି ଟାଂଗର ମାଟି ଆଉ ସେସବୁ ପ୍ରତ୍ୟୟ ହେଉଛି ମରୁଭୂମିପରି । ନଦୀମଧ ଲାଜଲାଜ ହୋଇ ମୁହଁ ଛପାଇ ଦେଉଛି ତା' ଗ୍ରାସରେ । ତା'ର ବିସ୍ତାରିତ ବାଲୁକା ବୁକୁରେ ଏବେ ଲମ୍ୱା ପ୍ରାଚୀର । ସତେଅବା ସେତେକ କରି ବାଇମୁଣ୍ଡିଙ୍କର ଯଶକୁ ଛଡ଼େଇ ନେବେ ଆଜିର ରାଜନେତା । ସେହି ବୁକୁ ଉପରେ ଏବେ ଠିଆ ହୋଇଛି କଂକ୍ରିଟର ଖୋପମାନ । ମଣିଷ କି ଆଉ ଛାଡ଼େ । ତା' ବୁକୁରେ ସାମାନ୍ୟତମ

ଜାଗା ଥିବାଯାଏ ସେ ଖୋପ ତିଆରିରେ ମତ୍ତ ରହିବ । ନଦୀ ଏଠି ଆଉ ଚପଳଛନ୍ଦା ନୁହେଁ । ଅନେକଟା ସଂଯତ । ଆବରଣ ମଧ୍ୟରେ କୁଣ୍ଠିତ ତା'ର ଯାତ୍ରା । ମଣିଷର ଇଚ୍ଛାରେ ସେ ଏଠି ପ୍ରବାହମାନ ସୀମିତ କଳେବର ନେଇ । ସେହି କଂକ୍ରିଟ ରାକ୍ଷସର ପ୍ରାଦୁର୍ଭାବ ଇଏ । ବାଲିଟ୍ରକ ଚାଲିଛି ରାତି ଥାଇ । ସଭ୍ୟତାର ଉତ୍‌ଥାନ ପତନ । ସମୟର ଚକ ଘୁରୁଛି । ଏ ବିଶ୍ୱ ତା'ର ଅଧୀନ । ଆଉ ମଣିଷ ? ସେ ନିଜେ ?

ଛାତି ଭିତରଟା ତାଙ୍କର ବଡ଼ ନିଛାଟିଆ ହୋଇଗଲା । ରିଟାର୍ଡ଼ କରିବା ହୋଇଗଲାଣି ଏଗାର ବର୍ଷ । ଦୀର୍ଘ ଏତେବର୍ଷ ଧରି ସେ ଯେ କେମିତି ଚାଲି ଆସିଲେଣି ଏଇ ସଂସାରର ରାସ୍ତା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କାଲି ସକାଳେ ତାଙ୍କ ସତୁରୀ ଚାଲିବ । ଜୀବନର ଏକ ଲମ୍ବା ରାସ୍ତା । ଅଭାବ, ଅନାଟନର ଝଣଝଣ ଶବ୍ଦ ଭିତରେ, କସରତ ଭିତରେ ବାଟ ଚାଲିଛନ୍ତି ଯେ ଚାଲିଛନ୍ତି । ତା'ର ଶେଷ କେଉଁଠି ସେ ଜାଣନ୍ତି ନାହିଁ । ଭାବିଲେ ଝାପ୍‌ସା ହୋଇଯାଏ ସବୁ । ହଠାତ୍ ଆଗକୁ ଯାଇଥିବା ପଥ ଦିଶେ ନାହିଁ । ଅବା ରାସ୍ତାଟା କୁହୁଡ଼ିଘେରା । ଅଥଚ ଏତେ ଧୈର୍ଯ୍ୟ....ହସିଲେ ସେ ମନେମନେ । ଆଖି ତାଙ୍କର ଖୋଲିଗଲା । ଆଉ ଭଲ ଲାଗୁନାହିଁ ଶୋଇ ରହିବାକୁ । ଉଠିଲେ ସେ ।

ବାହାରକୁ ଆସିଲେ । ତାଙ୍କ ଆସିବା ଶବ୍ଦରେ ଦୁଲ୍‌ଦାଲ୍ ହୋଇ କିଏ ସବୁ ଦୌଡ଼ି ଚାଲିଗଲେ । ମନେହେଲା ଆଗରୁ ଅନ୍ଧାରରେ ଛପିଛପି ଠିଆ ହୋଇଥିଲେ । ସେମାନେ ପାଚେରୀ ଉପରୁ ଡେଇଁ ଦୌଡୁଥିଲେ ମୁଖ୍ୟ ରାସ୍ତା ଆଡ଼େ ।

ବଡ଼ ଅଜବ ଏ ସହର । ଫୁଲଚୋରଙ୍କ ଦୌରାତ୍ମ୍ୟରୁ ମୁକ୍ତି ନାହିଁ । ଝିଅ ଲଗାଇଥିଲା ଷାଠିଏଟା ଡାଲିଆ ଗଛ । ସବୁ ଫୁଟିଥିଲା । ସକାଳୁ ଉଠି ଦେଖେତ ଗୋଟାଏ ହେଲେ ବି ନାହିଁ । ଝିଅଟା ରାଗ ଗରଗର ହୋଇ ସବୁ ଗଛକୁ ହାଣି ଗଡ଼େଇ ଦେଇଥିଲା । କାନ୍ଦକାନ୍ଦ ହୋଇଯାଇଥିଲା । ସେହିଦିନୁ ଫୁଲଗଛ ଲଗା ବନ୍ଦ ହୋଇଗଲା । ଅଥଚ ସେହି ଗୋଟାଏ ବର୍ଷରେ କେତେ କୁସୁମ ଫୁଲ ନଫୁଟିଛି ! କେଉଁଠିକୁ ବା ନ ଯାଇଛି ! ଆଖପାଖ କେତେ ମନ୍ଦିରକୁ ପଠାହୋଇଛି । ହେଲେ ସବୁ ବନ୍ଦହେଲା । ମଣିଷ ମନର ଆଗ୍ରହ ଟିକକୁ ଚୋରକରି ପଡ଼ିଆ କଲ । ଆଉ ବା କ'ଣ ବାକି ଅଛି ଯେ ତୁମ ମାନଙ୍କର ଏ ରାତ୍ରି ଅଭିସାର !

କ୍ରମଶ ଫର୍ଚ୍ଚା ହୋଇ ଆସୁଛି । ସେ ଗୋଡ଼ିବାଣ ଗଛକୁ ଚାହିଁଲେ । ଲାଲ ଫୁଲରେ ଭରା । କି ମନୋଲୋଭା ! ଷ୍ଟ୍ରିଟ ଲାଇଟ ଲିଭିଗଲେ ବି ଆଲୁଅ ଫିଟୁଥିବା ପୃଥିବୀରେ ଏତେ ମୋହମୟ ଏଇ ଗଛବୃକ୍ଷ ଦିଶେ କାହିଁକି ! ବ୍ରାହ୍ମ ମୁହୂର୍ତ୍ତର

ଗୋଟାଏ ପବିତ୍ର ଭାବ ଥାଏ । ତଳ ଡାହିମାନଙ୍କରେ ଗୋଟାଏ ବି ଫୁଲନଥିଲା । ମନ୍ଦାର ଗଛରୁ ବଞ୍ଚିଥିବା କେତୋଟି କଢ଼ି ତୋଳି ରଖିଲେ । ଆଶା କଢ଼ଗୁଡ଼ିକ ଫୁଟିଯିବ । ଟଗର ଗଛଟି ବଳିପଡ଼ିଛି କେତେଦିନୁ । ଫୁଲରେ ନଦି ହୋଇଥାଏ ଅହର୍ନିଶି । ଯେତେ ଚାହିଁବ ସେତେ ନେଇପାରିବ । କାମ ଚଳାଇବାକୁ ଯଥେଷ୍ଟ । ଅଥଚ୍ ସେହି କଂକ୍ରିଟ ରାକ୍ଷସର କବଳରେ ସମସ୍ତେ କବଳିତ । ତାଙ୍କର ମଧ୍ୟ ଏଇ ଧାଡ଼ିଏ ଆଜ୍‌ବେଷ୍ଟସ୍ ଘର ଭାଙ୍ଗି କୋଠାହେବ । ସେହି ଯୋଜନାରେ ଏବେଠାରୁ ଅନେକ ଫୁଲଗଛକୁ କାଟି ସାରିଲେଣି । ଦେବଦାରୁ ଗଛ, ପିଜୁଳି ଗଛ, ସଜନା ଗଛ, ତରାଟ ଫୁଲର ଗଛ ଆଉ କିଛି ରହି ନାହିଁ । ଯେମିତି କି ନିଶା ଘାରିଛି ଏଇ ମଣିଷ ମାନଙ୍କୁ । ଘର ତିଆରି ଚାଲିଛି ଖାଲି ସହର ଯାକ । ଭାରତ ଯାକ । ପୃଥିବୀ ଯାକ ।

ସେ ତିଆରି କରି ରଖିଥାନ୍ତି ଲୁହା ରଡ଼ର ତିଆରି ନଗିଟିଏ । ଶକ୍ତକରି ବାନ୍ଧିଥାନ୍ତି ତା' ଅଗରେ ଥିବା କାଠର ଅଙ୍କୁଶଟିଏ । ଫୁଲଟାକୁ ଆଣିବାକୁ ହାତ ନ ପାଇଲେ ବ୍ୟବହାର କରନ୍ତି । ଏବେ ସେ ନଗିଟିକୁ ନେଇ ପାଚେ଼ରୀ ଉପରକୁ ଉଠିବାକୁ ଚେଷ୍ଟାକଲେ । ଉଠୁଉଠୁ ସାହାସୀ ଗଲେ ।

— ଇଏ କ'ଣ.... ଇଏ କ'ଣ ? ତୁମେ ପାଚେ଼ରୀ ଉପରକୁ ଉଠୁଛ ? ତୁମର ଅକଲତକ କୁଆଡ଼େ ଗଲା ? ଫୁଲ ଆଣିବ ବୋଲି ତୁମେ ବୁଢ଼ା ମଣିଷଟା ଉଠୁଛ ପାଚେ଼ରୀ ଉପରକୁ !

ବାଣୀବ୍ରତାଙ୍କ କଣ୍ଠସ୍ୱର ଯେତିକି ତୀକ୍ଷ୍ଣ ସେତିକି ଆକଟିବା ଢଙ୍ଗରେ ତୀବ୍ର ହୋଇ ଉଠିଲା । ଏମିତି ଯେ ନହୋଇଛି ଆଜି ନୂଆକରି ଆଦିତ୍ୟ ପାଚେ଼ରୀ ଉପରେ ଚଢୁଛନ୍ତି ଆଉ ବାଣୀବ୍ରତା ତାଙ୍କୁ ଆକଟୁଛନ୍ତି ଅଭିଭାବିକାର ଠାଣୀରେ । ସେ ସଜନା ଗଛର ଦୁଇକେନାରେ ଠିଆହୋଇ ଥରେ ସଜନା ଛୁଇଁ ପାରୁଥିବାର ଦୃଶ୍ୟରେ ଆଖି ଖୋସିହୋଇ ପଡ଼ିଥିଲା ତାଙ୍କର । ଏମିତି ଗୋଟାଏ ଗୋଟାଏ ଅଭାବିତ ଦୃଶ୍ୟ ଯେ ସେ ପ୍ରତ୍ୟକ୍ଷ କରିନାହାନ୍ତି ତା' ମଧ୍ୟ ନୁହେଁ । ହେଲେ ତୀବ୍ର ରାଗରେ ନାକପୁଡ଼ା ତାଙ୍କର ଫୁଲିଉଠିଲା ଏବଂ ଆଖି ଛଳଛଳ ହୋଇଗଲା ।

ଆଦିତ୍ୟ ପାଚେ଼ରୀ ଆରପଟ ରାସ୍ତାରୁ ଅପରାଧଟାଏ କରିପକାଇଥିବାର ଭଙ୍ଗୀରେ ନଗିଟିଧରି ଗେଟ୍ ପାରିହୋଇ ଭିତରକୁ ଆସିଲେ । ନଗିଟିକୁ ଯଥା ଜାଗାରେ ଆଉଜାଇ ଦେଇ କୂଅପାଖକୁ ଗଲେ । ସେଠୁ ସେ ଗୋଡ଼ ଧୋଇବେ ଏବଂ ଘର ଭିତରକୁ ଯିବେ । ଯାହାହେଉ ବାଣୀବ୍ରତାଙ୍କର ଏଇ କଟୁ ମନ୍ତବ୍ୟ ଏବଂ

ବିଚ୍‌ଳିତ ହୋଇ ପଡୁଥିବାର ଅବସ୍ଥା ପିଲାମାନେ ଦେଖି ନାହାନ୍ତି । ନହେଲେ ଆହୁରି ଗର୍ଜନ କରି ସମସ୍ତେ ତାଙ୍କ ଉପରକୁ ଝାମ୍ପି ପଡ଼ିଥାନ୍ତେ । କ'ଣ ଗୋଟାଏ ମାରାତ୍ମକ ଭୁଲ କରିଥିବାର ଅଭିଯୁକ୍ତ କରି ତାଙ୍କର ସମସ୍ତ ବ୍ୟକ୍ତିତ୍ୱକୁ ଫିକା କରିଦେଇଥାନ୍ତେ । ରକ୍ଷା ହୋଇଛି । କେବଳ ବଡ଼ି ଭୋର୍‌ରୁ ତାଙ୍କ ପରେପରେ ବାଣୀବ୍ରତା ହିଁ ଉଠନ୍ତି ।

କୂଅ ପାଖରେ ଦାନ୍ତ ଘଷିଲେ ସେ । ସେତେବେଳକୁ ବାଣୀବ୍ରତା ପାଇଖାନା ଭିତରକୁ ଗଲେଣି । ନ ଗାଧୋଇଲେ ସେ ରୋଷଇ ଘରକୁ ଯା'ନ୍ତି ନାହିଁ । ଛୁଆଁଛୁଆଁ ହୋଇ ଘରଟାଯାକ ଅବା ପ୍ରଚଣ୍ଡ ବିସ୍ଫୋରଣରେ ଫାଟିଯିବ । ସେଥିପାଇଁ ଆଦିତ୍ୟ ସଂପୂର୍ଣ୍ଣ ସଜାଗ । ଦିନାକେତେ ସେ ଲୁଙ୍ଗି ପିନ୍ଧି ପାଇଖାନା ଯାଉଥିଲେ । ବାଣୀବ୍ରତାଙ୍କର ଦ୍ୱିରୁକ୍ତି ଭାବ-ସଣ୍ଣା ଟିକେ କେହି ଶିଖେଇଲେନି । ଗାମୁଛା ପିନ୍ଧି ଯିବ । ଲୁଙ୍ଗି କ'ଣ ? ଘରଦ୍ୱାର ଛୁଇଁବ ମୋର । ଅରୁଆରେ ମୋର ହାଣ୍ଡି, କୁଣ୍ଡେଇ, ଚାଲୁଣି, ପାଚିଆ ଥୁଆ ହୋଇଛି । ସେସବୁ ଛୁଇଁବ । ତାଙ୍କର ଏ ଛୁଆଁ ରୋଗ ପାଇଁ ସେ ସବୁବେଳେ ଅଶ୍ୱସ୍ତି ଅନୁଭବ କଲେବି ପଇଁଚାଳିଶ ବର୍ଷର ଦାମ୍ପତ୍ୟ ଜୀବନରେ ଟିକେହେଲେ ଉନ୍ନତି କରିପାରିଲେ ନାହିଁ କି ସହଧର୍ମିଣୀଙ୍କୁ ବୁଝେଇ ପାରିଲେ ନାହିଁ-ଛୁଆଁଛୁତ ସେ ମାନନ୍ତି ନାହିଁ। ଏସବୁ ତୁମର ମାନିଆ ରୋଗ । ଏ ଗୁଡ଼ାକ ଛାଡ଼ିଦିଅ । ବରଂ ବୁଢ଼ୀହୋଇ ଆସିବା ସାଙ୍ଗକୁ ତାଙ୍କର ବେଶୀବେଶୀ ମୁଣ୍ଡ ଧୋଇବା, ଆଙ୍ଗମାରେ ଘାଣ୍ଟି ହେଲେ ବି ଭ୍ରୂକ୍ଷେପ ନକରିବା, ଗାଧୋଇ ସାରି ଡାଳରେ ପାଣି ଛାଟିଛାଟି ଯିବା, ଏ ସବୁକୁ ନେଇ ଅତ୍ୟଧିକ ପ୍ରତିକ୍ରିୟା ପ୍ରକାଶ କରିବା ହୋଇଛି । ତଥାପି ଆଦିତ୍ୟ ପାଟି ବନ୍ଦ କରି ରହିଛନ୍ତି ।

ସେ ବାସନ ମାଜିବା ଜାଗାକୁ ଗଲେ । ରାତିର ବାସନ ମାଜିବାକୁ ଲୋକଟାଏ ମିଳନ୍ତି ନାହିଁ । ମିଳିଲେ ବି ସେ ଆସୁଛି ଦିନ ନ'ଟାରେ । ଶହେ ଟଙ୍କା ପୁଣି ନେବ । ସବୁବେଳେ ବାଣୀବ୍ରତାଙ୍କ ସାଙ୍ଗରେ ଗରଗର । କେଉଁଠି ଡାଲି ଲାଗିଛି, କେଉଁଠି ପ୍ରେସର କୁକରର ଗ୍ୟାସ୍‌କେଟ୍ ବାହାରକରି ପରିଷ୍କାର ହେଉନାହିଁ ଏସବୁ ସେ ଖୁଣ୍ଟି ନାଣ୍ଟି ଦେଖିବେ । ବାସନ ମାଜିବାବାଲା ଗଲାପରେ ପୁନଶ୍ଚ ପାଣି ବାଲ୍‌ଟିରେ ସେସବୁ ଧୋଇ ରୋଷଇଘରେ ପୁରେଇବେ । ଉଚ୍ଚ ଜାତି ନହୋଇଥିଲେ ପ୍ରଶ୍ନ ଉଠୁନି ବାସନ ମାଜିବାର ।

ଆଦିତ୍ୟ ଚା' ସସପେନ୍‌ସ୍‌ଟା ଉଠାଇ ଆଣିଲେ । ନଡ଼ିଆ କତାରୁ ପୁଳାଏ ହାତରେ ଧରିଲେ । ବାସନମଜା ସାବୁନ ଶେଷ ହୋଇଯାଇଛି । ମାଟିରୁ ପୁଳାଏ ଡାଡ଼ି ଆଣିଲେ ।ସସ୍‌ପେନ୍‌ସ୍‌ଟା ମାଜି ବସିଲେ ।

ରୋଷେଇ ଘରକୁ ପଶି ଦେଖିଲେ କ୍ଷୀର ନାହିଁ । କେତେକରି କହିଛନ୍ତି ସମସ୍ତଙ୍କୁ ଟିକିଏ ରଖିଦେବ ରାତିରେ । ସକାଳୁ ଉଠୁଉଠୁ ଚା' ଟିକେ ଖାଇପାରିବେ । ନଚେତ୍ ସାରାଦିନ ମୁଡ୍‌ଟା ନଷ୍ଟ ହୋଇଯିବ । ହେଲେ ନାଁ...ହେଲାନି । ବଡ଼ କୁଟୁମ୍ବକୁ ଅଧ ଲିଟର କ୍ଷୀର କେମିତି ବା ଅଣ୍ଟିବ ? ପୁଣି ଗଉଡ଼ର ଯେଉଁ ପାଣିକ୍ଷୀର । ଯେତେ କହିଲେ ବି ମିଟୁଆ ଶୁଣେନି । ପାନଖାଇ ନାଲିଦାନ୍ତକୁ ଦେଖେଇ ହସିହସି ପଳାଇବ । ହଁ- ଭଲ କ୍ଷୀର ଦେଉଛି କହି ।

ଆଦିତ୍ୟ ଲୁଙ୍ଗି ଉପରେ ସାର୍ଟ ଖଣ୍ଡିଏ ଗଳେଇ ବଜାରକୁ ଗଲେ । କ୍ଷୀର ପ୍ୟାକେଟ୍ ପାଇଁ ସକାଳୁ ପାଞ୍ଚଟଙ୍କା ଖର୍ଚ୍ଚ କରିବାକୁ ପଇସା କାହିଁ ! ନଗଦ ପଇସା ନଦେଲେ ଦୋକାନୀଟା ବାକି ବି ଦେବନି । ସେକଥା ସେ ଜାଣନ୍ତି । ଓମଫେଡ୍‌ର ଏଇ କ୍ଷୀର ତାଙ୍କୁ ପସନ୍ଦ ନୁହେଁ । କେମିତି ଗୋଟାଏ ବାସେ । ସେଥିପାଇଁ ସେ ଗଉଡ଼ର ପାଣିମିଶା କ୍ଷୀର ହେଉପଛେ ପସନ୍ଦ କରନ୍ତି ।

ବଜାରରୁ ଫେରି ଘରେ ପହଞ୍ଚିଲାବେଳକୁ ବାଣୀବ୍ରତା ପାଇଖାନାରୁ ଫେରିଛନ୍ତି । ମଝିଆଁ ପୁଅ ଟ୍ରାକସୁଟ୍ ପିନ୍ଧି ଜୋତାର ଫିତା ଭିଡୁଛି । ବାଣୀବ୍ରତାଙ୍କର ଚିତ୍କାର ଶୁଭୁଛି " ବାପଟା ସବୁକାମ ଏକାଏକା କରୁଥିବ । ତୁମେ ଘରେ ବସି ଖାଲି ଗେଂଫିବ । ଦୌଡ଼ିଯାଇ ବଜାରରୁ କ୍ଷୀର ଆଣିଥିଲେ ହୋଇନଥାନ୍ତା ? ମଣିଷଟା ଚା' ଟିକେ ଖାଇବେ ବୋଲି ନିଜେ ସବୁ କରୁଛନ୍ତି ।"

ଆଦିତ୍ୟଙ୍କର ସ୍ୱର୍ଣକାତର ମନପ୍ରାଣରେ ଲାଗିଗଲା ଅବା କେଉଁ ବସନ୍ତର ହାଓ୍ୱା । ଥରି ଉଠିଲା ଅନେକ ସ୍ପନ୍ଦନ ନେଇ । ବାଣୀବ୍ରତାଙ୍କର ଏଇ ଆକଟିବାର ଢଙ୍ଗରେ ମନେହେଲା କେଉଁ ଦୂର ଦିଗ୍‌ବଳୟ ତଳୁ ଭିଜା ହାଓ୍ୱାଖଣ୍ଡେ ଆସୁଛି ଗ୍ରୀଷ୍ମ ଅପରାହ୍ଣରେ । ସୁଶୀତଳ କରି ଦେଉଛି ତାଙ୍କର ସମଗ୍ର ସତ୍ତାକୁ । ତାଙ୍କ ପାଇଁ ଦରଦ, ସହାନଭୂତିରେ ଭରପୂର ବାଣୀବ୍ରତାଙ୍କ ହୃଦୟ । ଏକାଏକା ସବୁକାମ କରିବାରେ ସେ ଏତେ ବ୍ୟଥିତ । ଅନୁଭବର ମହନୀୟତାରେ ସେ ଏବେ ଜଡ଼ସଡ଼ । ମନରୁ ତାଙ୍କର ସବୁ ଗ୍ଲାନି, କ୍ଲାନ୍ତି ନିମିଷେ ଚାଲିଯାଇଛି ।

ସୌମ୍ୟର କାନରେ ସେହି ବକ୍ତବ୍ୟ ପଡ଼ିଲା କି ନାହିଁ ତା' ବୁଝିପାରିଲେ ନାହିଁ ଆଦିତ୍ୟ । ସେ ଲକ୍ଷ୍ୟକଲେ ପିଲାଟା ନିରୁତ୍ତର । ଜଡ଼ ଭରତ । ପ୍ରତିକ୍ରିୟା ରହିତ । ତଳକୁ ମୁହଁପୋତି ଜୋତାର ଫିତା ଭିଡ଼ିବାଟା ତା'ର ଯେମିତି ବଡ଼ କାମ । କଥାଗୁଡ଼ାକ ପ୍ରତିଧ୍ୱନି ପରି ପ୍ରତିଫଳିତ ହେଉଛି । ଫେରିଯାଉଛି କେଉଁ ଉଷ୍ଟବିନ୍‌କୁ । ସେ ତଳକୁ ମୁହଁପୋତି ବାହାରି ଯାଉଛି ଗେଟ୍ ଆରପାଖକୁ । ଏବେ

ସେ କଲେଜ ପଢ଼ିଆରେ ଉଠିବ । ଖେଳିଖେଳି ଆସିବ ନ'ଟା ବେଳକୁ । ଘର ଖଟତଳେ ତାଙ୍କ କ୍ରିକେଟ ଟିମ୍‌ର ନେଟସ, ବ୍ୟାଟ, ବଲ, ପ୍ୟାଡ଼ ଇତ୍ୟାଦି ଥୁଆହୋଇଛି । ସୌମ୍ୟ ଟିମର ମ୍ୟାନେଜର । ସମସ୍ତଙ୍କ ଡାକରେ- ଭାଇ । ସୌମ୍ୟ ଭାଇ କହି ଦେଲେ ପଡ଼ାଯାକ ଚିହ୍ନିବେ । ଏଇ ନାଆଁରେ ସେ ଲୋକପ୍ରିୟ । ସେଇ ଯେମିତି ଗର୍ବ ସୌମ୍ୟର । ବାପର ଚା' ଖାଇବାକୁ କ୍ଷୀର ଅଛି କି ନାହିଁ ସେ ଦାୟିତ୍ୱ କେବଳ ତାଙ୍କର । ଘର ସାମ୍ନା ଦୋକାନକୁ ସକାଳୁଉଠି ଯା'ନ୍ତୁ ବା ବାଦାମବାଡ଼ି ଯାଏ ଚାଲିଚାଲି ଯା'ନ୍ତୁ, ତା'ର ସେଥିପ୍ରତି ପରଓ୍ୱା ନାହିଁ । ସେ କାହିଁକି ଏଥିରେ ମୁଣ୍ଡ ପୁରାଇବ ?

ଅଗତ୍ୟା ବାଣୀବ୍ରତାଙ୍କର ପୁଅଠାରୁ ଦରଦଟାଏ ଆଶା କରିବା ଦୂର ଆକାଶର ଉଲକାପରି ମିଳେଇ ଯାଇଥିଲା । ଆଉ ମଧ୍ୟ ଅଧିକାରବୋଧ ଜନିତ ଅଭିଭାବକତ୍ୱ ନିଥର ହୋଇଯାଇଥିଲା ତା'ର କଠୋର ଉପେକ୍ଷାରେ । ଯିଏ ଯେଉଁ ନିଶାରେ ମତ୍ତ । କାହାକୁ ଏ ଘରେ କ'ଣ ବା କହିବେ । ଯାଉ । ବୁଲୁଥାଉ । କେତେବେଳେ ଦାୟିତ୍ୱ ଆସି ପଡ଼ିବ ସେ ଜାଣେ । ବୟସ ବାଇଶି ହେଲାଣି । ତଥାପି ଦାୟିତ୍ୱ ମଥାରେ ନେବାର ଧାର ଧାରେନା ସିଏ । ଗୁଣୁଗୁଣୁ ହୋଇ ଅସନ୍ତୋଷରୁ ପୁଳାଏ ଉଦ୍‌ଗାରି ବାଣୀବ୍ରତା ଗାଧୋଇବାକୁ ଗଲେ । ଗୋଟାଏ କଥା ଆରମ୍ଭକଲେ ସେ ଥମିବେ ନାହିଁ । କେହି ତାଙ୍କୁ ଉପେକ୍ଷା କରିବା ବଡ଼ ଅସହ୍ୟ ତାଙ୍କ ପକ୍ଷରେ । ହେଲେ ଆଦିତ୍ୟ ସେସବୁ ସଯ୍ୟ କରିନିଅନ୍ତି ନୀରବରେ । ରାଗି ଉଠନ୍ତି ବେଳେବେଳେ । ଗର୍ଜନ କରି ଘର କମ୍ପାଇ ଦିଅନ୍ତି । ପୁଣି କେତେବେଳେ ନୀରବି ଯା'ନ୍ତି । ଅଭିମାନର ଭାରରେ ଚୁପହୋଇ ବସି ରୁହନ୍ତି । ଆଜି ବି ସେଇଆ ହେଲା । ଏ ହୋଇ ଗଲାଣି ନିତି ଦିନର ଘଟଣା ।

ଯେତେ କହିଲେ ବି ସୌମ୍ୟ ନିଥର । ଅବଜ୍ଞା ତା'ର । ଖେଳର ନିଶା ଏବେ ବି ବଳବତ୍ତର । ସେ ମନେକରେ ବାଇଶି ବର୍ଷରେ ସେ ଘର ଦାୟିତ୍ୱ କ'ଣ ପାଇଁ ନେବ । ଏ ହେଉଛି ଖେଳିବାର ବୟସ । ବରଂ ଘରର ଏ ଅଭାବବୋଧର ହୁଙ୍କାର ତା'ର ଜାଣିବା ଅନାବଶ୍ୟକ । ସେ କଥା ଅନୁଭବିଲେ ଆଦିତ୍ୟ ।

ସେ କିଚେନ୍ ରୁମ୍‌କୁ ଗଲେ । ଚା' ସସ୍‌ପେନ୍‌ସ୍‌ରେ ପାଣି ଦେଇ ଝର୍କାପଟେ ଚାହିଁଲେ । ଏକୁଟିଆ କାଉଟାଏ ରାଉରାଉ ହେଉଛି । ପ୍ରବଳ ଅନ୍ତର୍ଦାହରେ ଅବା ତା'ର କ୍ଷୁବ୍ଧତା ଜଣାଉଛି । ପିଜୁଳି ଗଛଟା କଟା ହେଲାପରେ ବି ସେ ଆସେ ବାରମ୍ବାର । ରୁକ୍ଷ ତା'ର ଲାଲ ଆଖିରେ କ'ଣ ଗୋଟାଏ ପ୍ରତିବାଦ

କରେ । ତାକୁ ଚାହିଁଲେ । ବାଣୀବ୍ରତା ବାଥ୍‌ରୁମରୁ ଫେରି ସିଆଡ଼େ ଅନେଇ ବ୍ୟସ୍ତ ହୋଇ ପଡ଼ିଲେ-ମଲା, ଏ ଅଣ୍ଡିରା କାଉଟା କାହିଁକି ଏମିତି ରାଉରାଉ ହେଉଛି । ହେ ଜଗନ୍ନାଥ...ହେ ଜଗନ୍ନାଥ କହି ସେ ପୂଜାଘରକୁ ଗଲେ ଢାଳ ଆଣିବାକୁ । ସେମିତି ଓଦାଲୁଗା ପିନ୍ଧି ସେ ଚଉରାମୂଳକୁ ଯିବେ ପାଣିଦେବାକୁ । ହେଲେ ଅମୂଳକ ଆଶଙ୍କାରେ ସେ ଅନ୍ୟମନସ୍କ ଦିଶୁଥାନ୍ତି । ଆଦିତ୍ୟ ଏ ସବୁକୁ କୁସଂସ୍କାର ଭାବନ୍ତି । ବେଳେବେଳେ ମଧ ଗୁରୁତ୍ୱ ଦେଇଥାନ୍ତି । ହେଲେ ବାଣୀବ୍ରତାଙ୍କପରି ମନତଳେ ଏତେ ଦୁର୍ବଳତା ତାଙ୍କର ନଥାଏ । ମଣିଷ ତ ସମୟର ଦାସ । ଭାଗ୍ୟର କ୍ରୀଡ଼ନକ । କ'ଣ ପାଇଁ ଏସବୁ ଭାବି ଡରିଯିବ !

ଉତ୍ତୁରିଆସିଲା ଚା' ପାଣି । ପତିଟିକେ ପକାଇ ତାଉ କମାଇଦେଲେ । ଚା' ଛାଣି କପ୍‌ଟାକୁ ହାତରେ ଧରି ବାହାରି ଆସିଲେ । ଚା' ପିଇସାରି ସକାଳର କାଗଜରେ ଆଖି ପକାଇଲେ । ଭଲ ଦିଶୁନାହିଁ । ବୟସ ହୋଇଗଲେ ପରଳ ଉତ୍ପାତରୁ ମୁକ୍ତି ନାହିଁ । ହେଲେ ପାଞ୍ଚହଜାର ଟଙ୍କା ଦରକାର ଅପରେସନ ପାଇଁ । କିଏ ଦେବ ? ଆଉ ନିଜର ଅଠରଶହ ଟଙ୍କା ପେନ୍‌ସନରେ ଏସବୁ ବଡ଼ବଡ଼ କାମ କରିବା ଦୁରୁହ ବ୍ୟାପାର ତାଙ୍କ ପାଇଁ । ତଥାପି ସେ ସଂଘର୍ଷ କରି ଚାଲିଛନ୍ତି ଟିକିଏ ଦୁନିଆର ଖବର ଜାଣିବାପାଇଁ । ପରଳଟା ପୁରା ମାଡ଼ିନାହିଁ । ଆହୁରି ଅନେକଟା ବାକି ରହିଛି । ଯାହାହେଉ ଭଗବାନଙ୍କ ଦୟାରେ ଆସ୍ତେ ଆସ୍ତେ ଚାଲିଛି । ଆରପଟ ଆଖିଟା ଧରି ଆସୁଛି । ପେପର ପଢୁପଢୁ ବୋହୂର ଫର୍ମାସୀ ଶୁଭିଲା । ବଡ଼ପୁଅର ସ୍ତ୍ରୀ । ଗାଁରୁ ଆସିଛି ।

ବାପା-ଚିଙ୍ଗୁଡ଼ି ନାହିଁ । ମାଛ ଆଣିବ ବଜାରରୁ । ଆଦିତ୍ୟ ପେପରରୁ ମୁହଁ ଉଠାଇଲେ ନାହିଁ । ମୁହଁର ମାଂସପେଶୀ ଆପେଆପେ ସଂକୁଚିତ ହୋଇଗଲା ଏ କଥା ଶୁଣୁଶୁଣୁ । ଅଗତ୍ୟା ପେପରଟା ଥୋଇ ସେ ଉଠିଗଲେ ସାହୁ ଦୋକାନକୁ । ସେଠି ବାକି ଖାତାରେ ହିସାବ ଲେଖାହୁଏ । ମାଛବାଲା ମଧ ବାକି ଖାତାରେ ଲେଖେ । ଏମିତି କି ବାକିରେ ଆଣନ୍ତିବୋଲି ଅଧିକା ଲେଖିଦିଅନ୍ତି । ମାଛ ଆଉ ଚିଙ୍ଗୁଡ଼ି ଆଣି ଆସିବାପରେ ପୁଣି ଶାନ୍ତିର ବରାଦ– ବାପା ମସଲା ପ୍ୟାକେଟ୍‌ଟାଏ ଆଣିବେ ।

ପେପର ପଢ଼ିବା ଆଉ ନୋହିଲା । ଏଥର ସେ ଉଠିବେ ପରିବା ଆଣିବାକୁ । ଇଂରେଜ ଅମଳର ଯୌତୁକ ସାଇକେଲ୍‌ଟିରେ ଏବେ ବି ପ୍ରାଣ ଅଛି । ସେଇଟିକୁ ପେଲି ଛତ୍ରବଜାର ଯା'ନ୍ତି ସେ । ଆଜିକାଲି ଆଉ ପାରୁନାହାନ୍ତି । ସୌମ୍ୟକୁ ଯେତେ ଛିଗୁଲେଇ କହିଲେ ବି ଶୁଣେନାହିଁ । କ୍ଷୀର ପ୍ୟାକେଟ୍‌ଟାଏ

ଆଣିବାକୁ ସାହି ଦୋକାନକୁ ଯିବାକୁ ଯିଏ ଅସମ୍ମାନ ଭାବେ, ସେ ପୁଣି ଯିବ ଛତ୍ରବଜାର ପରିବା ଆଣିବାକୁ । ନାଁ...ତା' ହୁଏନି । ଗର୍ଜିଗର୍ଜି ଥକିଯାନ୍ତି ଆଦିତ୍ୟ । ଅସହାୟତାରେ କଣ୍ଠ ତାଙ୍କର ଶୁଖିଯାଏ ଅଥଚ ଚୁପ୍‌ହୋଇ ଚାଲିଯାଏ ଘରୁ ସୌମ୍ୟ ।

ଆଜି ଛତ୍ରବଜାରକୁ ଯିବାକୁ ସାହାସ କୁଳାଉ ନାହିଁ । ସାଇକେଲ୍ ଚଲାଇ ଯିବାକୁ ବାରମ୍ବାର ବାରଣ କରୁଛନ୍ତି ବାଣୀବ୍ରତା । ମନ ବୁଝେନି । ମଣିଷ ମନକୁ ବୁଝାଇ ପାରେନି । ଭାବେ ହଁ ଏଇଟିକେ କାମ ତ, କ'ଣ ପାରିବି ନି ? ହୋଇଯିବ ! ସତେ କି ମୁଁ ବୁଢ଼ା ହୋଇଗଲି । ଏତେ ଅକ୍ଷମ ମୁଁ ? ନହେଲେ ଏତେ ଭୟ କାହିଁକି ? କିନ୍ତୁ ବାଣୀବ୍ରତା ସବୁବେଳେ ଅମୂଳକ ଆଶଙ୍କା କରିବସନ୍ତି । ତାଙ୍କର ଭୟ ପ୍ରଚୁର । ଆଖିକୁ ଦିଶୁନି । କେଉଁଠି କ'ଣ ହୋଇଯିବ ।

ପରିବା ଆଣିବା କଥା ଭାବୁଭାବୁ ସେ ଠିକ୍ କରିପାରିଲେନି ଏତେଦୂର ଯିବେ କି ନାହିଁ । ତାଙ୍କୁ ମଧ ଆଜିକାଲି ଭଲଲାଗେ ନାହିଁ ଦେହଲଗା କାମ କରିବାକୁ । ସବୁର ଗୋଟାଏ ବୟସ ଥାଏ । ମଣିଷ ଏଇ ଶେଷ ଲଗ୍ନରେ ଚାହେଁ ଟିକିଏ ଆରାମ । କେହିଜଣେ ସେହି ଦାୟିତ୍ୱ ନେଲେ ହାଲ୍‌କା ଲାଗେ । ହେଲେ ତା' ବୋଧହୁଏ ସମ୍ଭବ ନୁହେଁ । ଲାଗୁନାହିଁ କେହି ଦାୟିତ୍ୱ ନେବେ । ସେ ହାଲକା ହୋଇ ଅନ୍ୟଚିନ୍ତା କରିବେ । ମନ ମୁତାବକ କାହା ସାଙ୍ଗେ ଆଡ୍ଡା ଜମାଇବେ । ପେନ୍‌ସନ୍‌ଭୋଗୀ ବୟସ୍କ ଲୋକଙ୍କ ସାଙ୍ଗରେ ଦୋସ୍ତି କରିବେ । ଗପିବେ । ନଈ ବନ୍ଧ ଉପରେ ବସିବେ । ହାୱା ଖାଇବେ ଅନ୍ୟମାନଙ୍କ ପରି । କେବେ କେମିତି ଗାଁକୁ ଯାଇ ମାସେ ରହି ଆସିବେ । ହେଲେ ଏ ଯୁଆଳି ଯେମିତି ତାଙ୍କ କାନ୍ଧରୁ ଉଠୁନି ! ସେ ମୁକ୍ତ ହୋଇପାରୁନାହାନ୍ତି ।

— ପରିବା ..... ପରିବା

ବାହାରେ ଡାକିଲା ପରିବାବାଲା ନନା ।

ଏ ସ୍ୱର ଭିତରେ ଆଦିତ୍ୟଙ୍କ ମୁହଁ ଉଜ୍ଜ୍ୱଳି ଉଠିଲା । ଯାହାହେଉ ନନା ଠିକ୍ ସମୟରେ ଆସିଲା । ନହେଲେ ତାଙ୍କୁ ଛତ୍ରବଜାର ଯାଏ ଯିବାକୁ ପଡ଼ିଥାନ୍ତା । ସେ ଟିକିଏ ନରମ ହସିଲେ । ଚାଉଳଧୂଆ ପାଚିଆଟି ନେଇ ଆଗେଇଗଲେ ଗେଟ୍ ପାଖକୁ । ନନାର ଟୋକେଇରେ ଜାତି ଜାତିକା ପରିବା । ସବୁ ସତେଜ । ସାଇକେଲ୍‌ରେ ନଦି ବିକ୍ରି କରୁଛି । ପରିଶ୍ରମ ଅନେକ । ସେଥିପାଇଁ ସବୁ

ଆଇଟମ୍‌ରେ ଦୁଇଟଂକା ଲେଖେଁ ଅଧିକା । ଅବସରପ୍ରାପ୍ତ ସ୍ୱଳ୍ପ ବେତନଭୋଗୀ ମଣିଷଟିଏ ପାଇଁ ଏହା ବୋଝ ଉପରେ ନଳିତା ବିଡ଼ା । ମନ ଗ୍ରହଣ କରେନାହିଁ ଗୋଟାଏ ଟଂକା ଅଧିକା ଦେବାକୁ । ହେଲେ ନାଚାର । ଅନନ୍ୟୋପାୟ ସେ । ମନ ଭିତରେ ଝଟକା ଲାଗିଗଲା ତାଙ୍କର । ଯେମିତି କି ରକ୍ତ ଶୁଖିଯାଉଛି ଏଇ ଦାମଶୁଣି । ତଥାପି ସେ ପାଚିଆ ବଢ଼େଇଦେଲେ । ତିରିଶ ଟଂକାର ପରିବା । ଦେଖାଯାଉନି ଆଖିକୁ । ସେସବୁ ବାକି ଖାତାରେ ଲେଖି ରଖିଲା ନନା । ସାଇକେଲ୍ ଗଡ଼େଇ ଆଗକୁ ଚାଲିଗଲା ଡାକିଡାକି ।

ଏଇମାତ୍ର ପରିବା ଦେଖି ବାଣୀବ୍ରତା ଚିହିଁକି ଉଠିଲେ । ଏତେ ଅଳ୍ପ । ପୁଣି ଶାଗ ଦୁଇଟଂକାକୁ ତିନିବିଡ଼ା ନଦେଇ ଦୁଇବିଡ଼ା ଦେଇଛି । ତୁମକୁ ପରିବା କିଣି ଆସେନି । ଯାହା କହିଲା ସେଇଆ ଦେଲ ।

ବାଣୀବ୍ରତାଙ୍କର ସବୁବେଳେ ଅସନ୍ତୋଷିଆ ମନଟାଏ ମୁଣ୍ଡପୋତି ତାଙ୍କ ଭିତର ବସିଥାଏ । ମନକୁ କିଛି ପାଏନି । ଠାକୁର ପୂଜା କରୁଥିବା ଅବସ୍ଥାରେ ସେ ଏତିକି ଘଟଣାକୁ ମଧ୍ୟ ଦେଖିପକାଇଛନ୍ତି । ସେହି ଅବସ୍ଥାରେ ସେ କଥା ହେଲେ । ଫୁଟୁଥିବା ଭାତ କଥା ମନେପଡ଼ିଲା । କହିଲେ ଦେଖ ତ ଭାତ ହାଣ୍ଡିଟା । ଜାଳ କମାଇ ଦିଅ । ତାଙ୍କ ସମୟରେ କାଠ ଜାଳି ରୋଷେଇ କରୁଥିଲେ । ଜାଳ କମେଇଦେବା କହିବା ତାଙ୍କର ଅଭ୍ୟାସ । ପ୍ରକୃତରେ ଆଦିତ୍ୟଙ୍କର ମନେ ନଥିଲା ସେ ଚା' କରିବା ପରେପରେ ଶ୍ରୀମତୀଙ୍କୁ କାମରେ ସାହାଯ୍ୟ କରିବାକୁ ଭାତ ବସାଇଦେଇ ଆସିଥିଲେ । ରିଟାର୍ଡ଼ ମଣିଷ ସେ । ହାତରେ ପଇସାର ଅଭାବ । ଆଉ କେଉଁ ଲାଜ ଲଜ୍ଜା ନାଁ ମୁରବୀ ପଣିଆ ଦେଖେଇବେ କାହା ଉପରେ । ବରଂ ଦୀର୍ଘ ଦାମ୍ପତ୍ୟ ଜୀବନର ଶେଷ ରାସ୍ତାରେ କେବଳ ବାଣୀବ୍ରତା ହିଁ ତାଙ୍କ ବଞ୍ଚିବାର ଆଧାର । ଯାହା ଉପରେ ଭାରଦେଇ ବଞ୍ଚିଯାଇ ହେବ ଅବଶିଷ୍ଟ ଜୀବନ । ଏଇ ତ ଆସିଗଲା ସୂର୍ଯ୍ୟାସ୍ତର ବେଳ । ତା'ପରେ ବୁଡ଼ିଯିବ ସୂର୍ଯ୍ୟ । ଅନ୍ଧାର ହିଁ ଅନ୍ଧାର । ସେହି ଅନ୍ଧାର ଭିତରେ କିଏ କେଉଁଠି ହଜିଯିବେ ତା' ବା କିଏ କହିବ ?

ତେବେ ବି ମନେହେଲା ଏହି ରଂଗରେ ଅନେକ ସହାନୁଭୂତିଶୀଳତା ଭରି ରହିଛି ଜୀବନ ପ୍ରତି । ଅନେକ କ୍ଷମା ଭରି ରହିଛି ପରିବେଶ ପ୍ରତି । ନହେଲେ ବଂଚିବାର ଏଇ ମୁହୂର୍ତ୍ତଃମୁହୂର୍ତ୍ତଃ ଆନନ୍ଦ ଆସନ୍ତା ନାହିଁ । ବିଷାଦରେ, ଅବସାଦରେ, ଚାଲିଯିବାର ଭୟରେ ମଣିଷ ନିଥର ପାଲଟି ଯା'ନ୍ତା ।

ସେ ଖୁସୀରେ ପରିବା ପାଚିଆକୁ ଛାଡ଼ିଦେଇ ଭାତ ଫୁଟୁଥିବା ହାଣ୍ଡି ସାମନ୍ନାରେ ଠିଆ ହେଲେ । ଭାତ ହୋଇଯାଇଥିଲା । ଗାଳି ପକାଇଲେ ପେଜ ।

ବାଣୀବ୍ରତା ଗାଧୋଇ, ଚଉରାମୂଳେ ପାଣିଦେଇ, ଠାକୁରପୂଜା କରି ବାହାରିଲାବେଳକୁ ନ'ଟା ହେଲାଣି । ବୋହୂଟା ତେଣେ ମାଛ ବାଛିବାରେ ଲଗାଇ ଦେଲାଣି ଗୋଟାଏ ଘଣ୍ଟା । ବଡ଼ ମାନ୍ଦା ସ୍ୱଭାବର । ଅଗତ୍ୟା ଆଦିତ୍ୟ କାମ ସାରି ଗାଧୋଇ ବାହାରିଲେ ।

ନାଳଯାକ ଭାତ । ଠିକ୍ ଭାବରେ ଚଳିବା ଶିଖିନାହାନ୍ତି କେହି । ଯାହା ଖାଉଛନ୍ତି ଅଇଁଠା ଥାଳିରୁ ନାଳକୁ ଛାଡ଼ି ଦେଉଛନ୍ତି । ଖଡ଼ିକା ଧରି ସେ ନାଳ ରାମ୍ପିବାରେ ବ୍ୟସ୍ତ ହୋଇଗଲେ । ପଡ଼ିଶା ଘରଟା ସବୁବେଳେ ଖିଟ୍‌ଖିଟ୍ । ନାଳରେ କ'ଣ ଗଲା କି ? ଆସି ଘୂର୍‌ଘୂର୍ ହେଉଥିବ । ପାଚେରୀକୁ ଲଗାଇ ନଡ଼ିଆ ଗଛଟା ପକାଇଲେ । ପାଚେରୀ ଫାଟି ଆଁ କରିଛି । ପିଲାମାନେ ସବୁବେଳେ ବ୍ୟସ୍ତ, କାହିଁକି ଭଂଗା ପାଚେରୀ ପାଖରେ ଏତେ ନଡ଼ବଡ଼ ହେଉଛ । କାଳେ ଧସିଯିବ ଉପରେ । ବଡ଼ ଆଶଙ୍କାୟିତ ପ୍ରତିଟି ମୁହୂର୍ତ୍ତ ଏଠି । ହେଲେ ନାଳ ସଫା କରିବାକୁ ହିଁ ପଡ଼ିବ । କିଏ ବା କରିବ ଏସବୁ କାମ ?

ବଡ଼ ଭୟ ଏଇ ପାଚେରୀର ବକାସୁର ପରି ଆଁ ମେଲାକରିଥିବା ଅବସ୍ଥାକୁ । ନଇଁ ପଡ଼ିଲାଣି କିଛିଟା । ମଣିଷମାନେ ଏମିତି କାହିଁକି ହୁଅନ୍ତି ଶିକ୍ଷିତ ହୋଇ ସେ ବୁଝିପାରନ୍ତି ନାହିଁ । ଜାଗା ଖର୍ଦ୍ଦବେଳେ କେଉଁଠୁ ଆସି ଦେଖାହୋଇଥିଲା ଲୋକଟି । କହିଥିଲା ମୋତେ ଗୁଣ୍ଠେ ଜାଗା ଦରକାର । ଦୁଇଜଣ ସାଙ୍ଗହୋଇ କିଣିଥିଲେ । ଏକା ଅଂଚଳର ଲୋକ । ସରକାରୀ ଚାକିରିଆ ମଧ୍ୟ । ଛୋଟ ପରିବାର । ଦୂରରେ ରୁହନ୍ତି । କେତେଥର ଡାକିଛନ୍ତି ଘର କରିବା ଆଗରୁ, ଆସଟିକେ ମପାଚୁପା କରି ସୀମା ଟାଣିଦେବା । ଲୋକଟା ଚାକିରି କବଳରୁ ଆସିବାକୁ ସମୟ ପାଇଲାନାହିଁ । ଅଥଚ ପରେ ଆସି ଦୁର୍ନାମ ରଟନା କରୁଛି ତାଙ୍କ ଆଡ଼କୁ ଫୁଟେ ରହିଛି । ସେହି ଅଭିସନ୍ଧିରେ ମନର ଓରିମାନା ମେଣ୍ଟେଇବାକୁ ବାରମ୍ବାର ନିଗୃହୀତ ହେବାକୁ ପଡୁଛି । ମାନସିକ ସ୍ତରରେ । ଏକି କଥା । ଆଦିତ୍ୟଙ୍କ ଭଳି ସ୍ପଷ୍ଟବାଦୀ ଲୋକଙ୍କ ପାଖରେ ଏତେ ପରୋକ୍ଷ ପ୍ରତାରଣା କ'ଣ ? ଆସିବ, ଠିକ୍‌ଠାକ୍ ମାପିଚୁପି ଆଉଥରେ ପାଚେରୀ ଉଠାଇବ । ଏବେ ଜୀବନକୁ ସଂକଟରେ ପକାଇ ସକାଳୁ ସକାଳୁ ଭଂଗା ପାଚେରୀ ପାଖରେ କିଏ କାମ କରିବ ? ଏମିତି କାମଟାଏ ଯେ ନକଲେ ନହୁଏ ।

ଶ୍ରୀମତୀଙ୍କ ସବୁବେଳେ ଆକ୍ଷେପ । ନିଜେ ତ କିଣିଥାନ୍ତ ଅଢ଼େଇଗୁଣ୍ଠ ଯାକ, କାହିଁକି ତାକୁ ଆଣି ଜମି କିଣେଇ ଦେଉଥିଲ । ଓହୋ ! କେତେ ଯେ ଆତ୍ମାଭିମାନକୁ ତାଙ୍କର କଥାଟା ବାଧେ, ସେକଥା ଶ୍ରୀମତୀ କେଉଁ ବୁଝନ୍ତି । କେତେବା ଏମିତି ରୋଜଗାର ତାଙ୍କର ଥିଲା ଯେ ଗୁଣ୍ଠେ ଜାଗାରେ ଦୁଇଗୁଣ୍ଠ କିଣି ପକାଇଥାନ୍ତେ । ଏଇ ଗୁଣ୍ଠକ କିଣିବାକୁ ତାଙ୍କୁ ଛ'ହଜାର ଟଂକା ପଡିଥିଲା । ସେତେବେଳେ ଛ' ହଜାର କ'ଣ କମ୍ କଥା । କଟକ ସହର ଯାକ ବୁଲିବୁଲି କେଉଁଠି ହେଲେ କାଗଜପତ୍ର ଠିକ୍‌ଥିବା ଜାଗା ପାଇଲେ ନାହିଁ ତାଙ୍କ ବାପା । ନୂଆବଜାର ଦୂର ଥିଲା, ଖାନ୍‌ନଗର ପାଖାପାଖି ଧାନବିଲରେ ମଣିଷ ବସତି ନଥିଲା, ଫ୍ରେଣ୍ଡସ୍ କଲୋନୀରେ ପୁଲିସ୍ ଅଫିସର ଦେଉଥିବା ଜାଗାଟା କାଗଜରେ ଭିନ୍ନେ, ମାପିଲା ବେଳକୁ ଭିନ୍ନେ ବାହରିଲା । ଏ ଜାଗାଟିର ମାଲିକ ଓକିଲବାବୁ ବଡ଼ ସଚ୍ଚୋଟ ଭଦ୍ର ବ୍ୟକ୍ତି ବୁହ । କଥାଟା ମାତ୍ର ଥରେ ବାପା ତାଙ୍କର କାନରେ ପକାଇଥିଲେ । ଅଥଚ୍ ଶେଷଯାଏ ବୁଲିବୁଲି ପଂହଚିଲା ବେଳକୁ ଜାଗା ରଖୁଛନ୍ତି । ହେଉପଛେ ଗୁଣ୍ଠେ ଚାରେଣା । ହେଉପଛେ ଛୋଟ । ହେଲେ ରେକର୍ଡ ଠିକ୍ ଥିଲା ତ । କେଉଁଠୁ ସେ ସେତେବେଳେ ଛ' ହଜାର ଜାଗାରେ ବାରହଜାର ପାଇଥାନ୍ତେ ଯେ ଏତେବଡ଼ ପ୍ଲଟ କିଣି ପକାଥାନ୍ତେ ! ଏତିକି କରିବା କେତେ କଷ୍ଟ ହୋଇଛି ସେ କଥା ସେ ଜାଣନ୍ତି । ଛୁଆମାନେ ମଧ୍ୟ ଟିକିଏ ଟିକିଏ କଥାରେ ଉଲୁଗୁଣା ଦିଅନ୍ତି । ଆମ ପାଇଁ କ'ଣ କରିଛ କି ? ଆଉ କ'ଣଟା କରିଥାନ୍ତି । କଟକ ସହରରେ ଜାଗାଟିଏ କରିଥିଲି ବୋଲି ଆଜି ସିନା ମୁଣ୍ଡ ଗୁଂଜି ପଡ଼ିଛ । ଆଉ କ'ଣ ମହଲା ଠିଆ କରିଥାନ୍ତି । ଏତେ କମେଇ ମୋର ଥିଲା ।

ଗୋଟାଏ କଥାରୁ ବାରକଥା ମନେ ପଡ଼ିଯାଏ । ଗୋଟାଏ କଥା ମନରେ ଅଶାନ୍ତି ଦେଲେ ତଦ୍‌ଜନୀତ ଅଶାନ୍ତିରୁ ପୁଣି ଆରମ୍ଭ ହୋଇଯାଏ ଚେନ ପରି ପ୍ରତିକ୍ରିୟା ଗୁଡ଼ାକ । ସେ ମନେମନେ କ୍ଷୁବ୍ଧ ହେଲେ ବି ଉପାୟ ନାହିଁ । କହିକହି ଥକି ଗଲେଣି । ଲୋକଟା ଏଡ଼େଇ ଚାଲିଛି । କେତେ କାଳ ଆଗରେ ଘଣ୍ଟା ପିଟିବେ ! ଛାଡ଼ .... ଏ ସବୁ ଗୋଟାଏ ଗୋଟାଏ ଦୁର୍ଯୋଗ । ଯାହାକୁ ଭଲରେ ମନ୍ଦରେ ଠିଆହେବ ଭାବି ମଣିଷ ପଡ଼ୋଶୀ କରିଥାଏ, ସେ ହିଁ ଶତ୍ରୁ ହୋଇଯାଏ । ନହେଲେ ଏକା ଅଂଚଳର ମଣିଷ, କିଣିଲା ବେଳେ କେତେ ମନ ଭୁଲାଣିଆ କଥା କହିଥିଲେ ବାପାଙ୍କୁ । ମୋର୍ ସ୍ତ୍ରୀ ନାଆଁ ଯାହା ତୁମ ବୋହୂ ନାଆଁ ସେଇଆ । ସେ ତୁମର ଝିଅପରି । ଅଥଚ ଏବେ ? ସେ ସବୁ ଆଉ ମନରେ ନଥାଏ । ଥାଏ କେବଳ ପ୍ରବଳ ଅସନ୍ତୋଷ । ମୁହଁକୁ ଚାହିଁଲେ ଜଣାଇଦିଏ ତା'ର ପ୍ରତିକ୍ରିୟା ନୀରବ ହୋଇ

ଚାଲିଯିବାରେ । ମୁହଁକୁ ବୁଲାଇ ଦେବାରେ । ଯେଉଁ ମୁହଁରେ ସେ ସର୍ବଦା ଲେଖି ଦେଉଥାଏ- ମୁଁ ଖୁସୀ ନୁହେଁ ।

କାହାକୁ ବା ମଣିଷ ଶିକ୍ଷିତ କହିବ ? ଚିନ୍ତାଶୀଳକହିବ ? ନମ୍ରଭାବରେ ସମସ୍ୟାଟିର ସମାଧାନ କରିବ ବୁଦ୍ଧି, ବିବେକ ଦେଇ ? କାହାଠାରୁ ଏ କଥା ଆଶା କରିବ ? ସାମ୍‌ନା ରାସ୍ତାଟା ଘରୋଇ । ମ୍ୟୁନିସପାଲଟିକୁ ଦେଲେ ସେମାନେ ବିଜୁଳି ଖୁଣ୍ଟ, ଟେଲିଫୋନ୍ ଖୁଣ୍ଟ, ନାଳ, ପାଣିକଳ ସବୁ ଯୋଗାଇବେ । ସେଥିପାଇଁ ମାଲିକଙ୍କ ଆକାଶ ଛୁଆଁ ଦାମ୍ । ମ୍ୟୁନିସପାଲଟି ହାତକୁ ନେଉନି । ଅରମା ବଣ ହୋଇଛି ରାସ୍ତାର ଶେଷ ଭାଗ । ତା'ପରେ ପାଣି ପୋଖରୀ, ସେଠିକୁ ପାଣି ଛାଡୁଥିଲେ । ସାମନାରେ ଜାଗା କିଣିଥିବା ଅଧ୍ୟାପକ ଜଣଙ୍କ ବିରାଟ ରଡ଼ିକରି ଆଗେଇ ଆସିଥିଲେ । ସେ ଯୁବକ, ଶକ୍ତ ଶରୀର । କଣ୍ଠ ମଧ୍ୟ । ପାଣି ରାସ୍ତାରେ କାହିଁକି ଛାଡୁଛ ଧମକ ଦେଲେ । କଟକ ସହରର ଅସଂଖ୍ୟ ଗଳିରେ ଯେଉଁଠି ନାଳପାଣି ରାସ୍ତା ଉପରେ ଯାଏ, ତା'ବା କେଉଁ ଅପୂର୍ବ ଥିଲା ଏଠି । ଆଦିତ୍ୟ ଅର୍ମାଜିତ ହୁଂକାରକୁ ଭଲ ପାଆନ୍ତି ନାହିଁ । ପୁଅ ବୟସର ଲୋକ ହୋଇ ଖରାପ ଭାଷାରେ ଗାଳିଗୁଲଜ କରିବା ବଡ଼ ଅଶୋଭନୀୟ । ହେଲେ ମାଟିତଳେ ଖୋଳି ତା' ଭିତରେ ଶଂଖ ବସାଇ ନାଳଟିକୁ ନେଇଯିବାକୁ ପଡ଼ିବ ପୋଖରୀ ଯାଏ । ସେଥିପାଇଁ ମଜୁରୀ, ନଳ ଦାମ୍ ମିଶି ଚାରିଶହ ଟଙ୍କା ଦରକାର । ପାଣି ଛାଡ଼ିଲେ ଅଧ୍ୟାପକ ତାଙ୍କ ପୁଲିସ ବଂଧୁଙ୍କ ପାଖକୁ ସିଧା ଚାଲିଯିବାର ଧମକ ଦେଇଛନ୍ତି । ଟୋକାଳିଆ ରକ୍ତ । ସ୍କୁଟର ତାଙ୍କର ପାଣିରେ ମାଡ଼ିହୋଇ ଯିବାକୁ ସେ ପସନ୍ଦ କରନ୍ତି ନାହିଁ । ଯେ କୌଣସି ମତେ ଆଦିତ୍ୟ ନିଜକୁ ସୁଧାରନ୍ତୁ ଆଉ ପାଣି ନାଳକୁ ଠିକ୍ ଭାବେ ଛାଡ଼ନ୍ତୁ, ତାହା ତାଙ୍କର ବକ୍ତବ୍ୟ । ସେଥିପାଇଁ ଅଶ୍ରାବ୍ୟ ଗାଳିଗୁଲଜକୁ ସେ ହଜମିଛନ୍ତି । ହେଲେ ପଇସା ଥିଲେ କାମଟା କରିପାରିଥାନ୍ତେ । ଅସହାୟ ହୋଇ ସେ ରହିଥିଲେ । ଭାଗ୍ୟକୁ ଝିଅ ଏକଥା ଶୁଣିଲାପରେ ଚାରିଶହ ଟଂକା ଖର୍ଚ୍ଚକରି କାମଟି କରିବାରେ ସାହାଯ୍ୟ କଲା । ଅଧ୍ୟାପକ ଚୁପ୍ ହେଲେ । ମଣିଷକୁ ଏମିତି ସିନା ଚିହ୍ନି ହୁଏ । ପ୍ରକୃତ ପକ୍ଷରେ ଚିନ୍ତାଶୀଳ, ବିବେକୀ ହେବା ଅନେକ ଦୂରୁହ ବ୍ୟାପାର । ବଡ଼ ମୁସ୍କିଲ । ମଣିଷର ସ୍ୱାର୍ଥପରତା, ଅହଂକାର, ଏ ସବୁ ସଂଯମକରି ଭଲ ମଣିଷଟିଏ ପରି ବ୍ୟବହାର କରିବା ବଡ଼ କଷ୍ଟ ।

ଅଧ୍ୟାପକଙ୍କର ପୁଲିସ୍ ଆଣି ଧମକାଧମକି କରିବା ପୂର୍ବରୁ ସମାଧାନ ହୋଇଥିଲା ସମସ୍ୟାଟି । ହେଲେ ସେହି ଦିନଠୁ ବଡ଼ ହୁସିଆର ହୋଇ ଚଳିବାକୁ ପଡ଼େ ପଡ଼ିଶାମାନଙ୍କ ସହ ।

ନାଳ ସଫାକରି ଚାଲିଗଲେ କୂଅପାଖକୁ ଗାଧୋଇବା ପାଇଁ । ଖୋଲାମେଲା ଜାଗାରେ ଟିକେ ତାଙ୍କୁ ଆରାଏ । ଯେତେହେଲେ ତ ମଫସଲ ଗାଁରୁ ଜୀବନ ମୂଳଦୁଆ ଗଢ଼ା । ସଂସ୍କାର, ସଂସ୍କୃତି ଯାହା କିଛି କହିଲେ ସେହି ଗାଁରୁ ହିଁ ଆରମ୍ଭ । ନଈ, ପୋଖରୀରେ ଗାଧୋଇବା ଯାହାର ଅଭ୍ୟାସ ଏ ଟେକା ପାଣିରେ କେତେ ବା ଚଳିବେ ?

ଗାଧୋଇ ସାରି ଆସିବାପରେ ବାଣୀବ୍ରତାଙ୍କର ପୂଜାକାମ ଶେଷ ହୋଇ ସାରିଥିଲା । ଆଦିତ୍ୟଙ୍କର ତ ଠାକୁର ପୂଜା ନାହିଁ । ବାଣୀବ୍ରତା ରୋଷେଇ ଘରେ ପଶି ଅବଶିଷ୍ଟ କାମ ଦେଖିବାକୁ ଗଲେଣି । ଭାତ, ଡାଲି, ଶାଗ, ତରକାରୀ ଇତ୍ୟାଦି ରୋଷେଇ ହେବ । ବୋହୂ ମଧ ଠିଆହୋଇ ରୋଷେଇରେ ସାହାଯ୍ୟ କରୁଛି । ହେଲେ ସେ ବା କେତେଦିନ ଏଠି । ପୁଣି ତାଙ୍କୁ ସବୁକିଛି କରିବାକୁ ପଡ଼ିବ । ଛ'ଷଠି ବର୍ଷ ବୟସରେ ହାତରୁ କେତେବେଳେ ହେଲେ କର୍ଛୁଲି ଖସିନି । ସବୁବେଳେ କାମ । ଡାଇନିଂ ଟେବୁଲ ଉପର ପୋଛା ହୋଇନି । ଅଇଁଠାର ଛାପ ଦିଶୁଛି ଆଖିକୁ । ସେ ଓଦାକନା ନେଇ ପୋଛି ଦେଲେ । ଆଦିତ୍ୟ ଗାଧୋଇସାରି ଚୁଡ଼ା କଦଳୀ ଖାଇବାରେ ଅଭ୍ୟସ୍ତ । ଗାଁରୁ ଚୁଡ଼ା ଆସେ । ହେଲେ ଦଶମାସ ହେବ ସେ ସବୁ ଛାଡ଼ିଲେଣି । ଏବେ ଦଶଟା ବେଳକୁ ଗରମ ଭାତ ଖାଇ ଚାକିରି କରିବାକୁ ଯିବେ ସେ । ସେଥିପାଇଁ ଏତେ ତନାଘନା । ଅବା ନୂଆନୂଆ ଚାକିରିରେ ଜଏନ୍ କରିଛନ୍ତି । ଟିକିଏ ଡେରି ହୋଇଗଲେ ହାତଛଡ଼ା ହୋଇଯିବ ।

ଭାତ ବାଢୁବାଢୁ ବାଣୀବ୍ରତାଙ୍କ ଆଖି ଲୁହରେ ଢଳେଇ ଆସିଲା । ସେ ନାକ ସୁଁ.. ସୁଁ କଲେ । ଅସମ୍ଭବ ଭାବରେ ନୀରବ ରହି ଖାଇବାକୁ ନିର୍ବିକାରରେ ବାଢ଼ିଦେଲେ । ଚାହିଁଲେ ଆଦିତ୍ୟଙ୍କୁ । ସତୁରୀ ବର୍ଷ ଦେହରେ ତଥାପି ଶକ୍ତି ଅଛି ? କେତେ ଖଟିବ ତୁମେ ? କଳାଚୂଳ ସାଂଗରେ ଧଳାର ପରିମାଣ ମିଶି ଗଲାଣି । ଆଖି ତଳଟା ଫୁଲିଲା ଫୁଲିଲା ଦେଖାଯାଉଛି । ମଣିଷଟା ବାଇଶବର୍ଷ ବୟସରୁ ଖଟିଖଟି ତଥାପି ଆରାମ ଟିକିଏ ମିଳିଲାନି ।

ଆଦିତ୍ୟ ଖାଇବାସାରି ଟିକିଏ ଖଟ ଉପରେ ଗଡ଼ି ପଡ଼ିଲେ । ଦଶ ମିନିଟ୍ ପରେ ସେ ଉଠି ପ୍ରସ୍ତୁତ ହେବେ ଯିବାକୁ । ଗୋଟାଏ ପ୍ରାଇଭେଟ୍ ଫାର୍ମରେ ଚାକିରି ଜୁଟିଛି । ଖଟିଲେ କିଛି ମିଳିଯିବ । ଟଂକା ହଜାରେ କି ପାଂଚଶହ ମଧ ତାଙ୍କ ପାଇଁ ବହୁତ ବଡ଼ ।

ପୁରୁଣାକାଳିଆ ଯୌତୁକ ସାଇକେଲ୍‌ଟି ଧରି ସେ ଗେଟ୍ ବାହାରକୁ ଗଲେ ।ସତେ କି ଯୁଆନ ଟୋକା କିଏ ଅଫିସ କରିବାକୁ ବାହାରି ଯାଉଛି । ନହେଲେ ଲେଟ୍ ମାର୍କିଂ ହୋଇଯିବ ହାଜିରା ଖାତାରେ ।

ବାଣୀବ୍ରତା ଘର ଭିତରେ ଥାଇ ଚାହିଁଥିଲେ ତାଙ୍କ ଯିବାବାଟକୁ । କ୍ଳାନ୍ତ, ପେଙ୍କୁଆ ଆଖିପତାରେ ତାଙ୍କର ଉଦାସୀନତା, ଅସହାୟତା ଓହ୍ଲାଇ ଆସୁଥିଲା । କେଜାଣି ଏ ଅନୁଭବ କେମିତି ! ଆଉ ନୂଆ ବୋହୂବେଳେ ଏଇ ମଣିଷଟିକୁ ଅଫିସକୁ ବିଦାୟ ଦେଲାବେଳର ମୁହୂର୍ତ୍ତ କେମିତି ! ଦୁଇଟାଯାକ ମୁହୂର୍ତ୍ତ କ'ଣ ଏକ ହୋଇପାରେ ? ଯଦିଓ ପଇସା କମେଇବାପାଇଁ ମଣିଷ କାମ କରେ ?

ସେ ରାସ୍ତାରୁ ନିଜର ଦୃଷ୍ଟି ଫେରାଇ ପୁଣି ଲାଗିପଡ଼ିଲେ ଘରକାମରେ ।

ସୌମ୍ୟ ଫେରୁଥିଲା କ୍ରିକେଟ୍ ଖେଳସାରି । ଆଦିତ୍ୟ ବାହାରି ଗଲାବେଳକୁ ତା'ର ଆଗମନ । ତାକୁ ପୁଣି ଖାଇବାକୁ ଦେବେ । ବୋହୂ ଶ୍ୱଶୁର ବାହାରିବା ଆଗରୁ ଶୋଇ ପଡ଼ିଲାଣି ଘଡ଼ିଏ । ତାକୁ ଡାକିବାକୁ ଆଉ ଇଚ୍ଛା ହେଲାନି ବାଣୀବ୍ରତାଙ୍କର । ନାତୁଣୀଟି ବାହାରିବ ସ୍କୁଲକୁ । ଦଶ ବର୍ଷର ଝିଅଟିଏ ବଡ଼ପୁଅର । ପାଖରେ ଥାଏ । ହେତୁ ହେବା ଦିନୁ ତାଙ୍କୁ ହିଁ ଚିହ୍ନେ । ବାକି ରହିଲା ନିଜ କଥା । ଏମିତି ହୋଇ ବେଳ ଗଡ଼ିଯାଏ । ଖାଇବା ଠିକ୍ ନଥାଏ ତାଙ୍କର । ଜୀବନ ଯାକ ତ ଯୌଥ ପରିବାରର ଗୁରୁ ଭାର ବହନକରି ସମୟ କଟିଗଲା, ଖାଇବା ପିଇବାର କେତେକେତେ ବେଳ ଗଡ଼ିଯାଇଛି ତା'ର ହିସାବ ନାହିଁ । ଆଜି ବା ଅଧିକା କ'ଣ ?

ସେ ବସି ପଡ଼ିଲେ ସୋଫା ଉପରେ । ପେପର ଦେଖିବାକୁ ମଧ୍ୟ ସମୟ ନାହିଁ । ପେପରଟି ଖୋଜି ପାଇଲାପରେ ଟିକିଏ ଆଖିପକାଇ ଦେବେ । ଏତେ କାମ ଭିତରେ ବି । ଚାରିଟା ବେଳକୁ ଫେରିବେ ଆଦିତ୍ୟ । ସେତେବେଳ ଯାଏ ଅପେକ୍ଷା କଲାପରି ଲାଗୁଥିବ ନିଜକୁ । କିନ୍ତୁ ଭୟଙ୍କର ଏକ ଆଶଙ୍କା ଭିତରେ । ଠିକ୍ ପହଂଚିଲେ କି ନାହିଁ । ଆଖିର ଯାହା ଅବସ୍ଥା, ରାସ୍ତାଘାଟର ଯାନବାହନ ଯେମିତି ବଢୁଛି, କେମିତି ଘରେ ପହଂଚିବେ ସବୁବେଳେ ସେହି ଚିନ୍ତା ।



( ୨ )

ସୌମ୍ୟ କଲେଜ ପଡ଼ିଆକୁ ସକାଳ  ଛ'ରୁ ଯାଇ ବେଳା ଦଶଟା ସରିକି ଫେରେ । ଏଇଟା ତା'ର ନିତିଦିନିଆ ଅଭ୍ୟାସ । ବୟସ ବାଇଶିରେ ଏବେ ବି ଉପାର୍ଜନ କରିବା ସମୟ ଆସିନି । ବାପାର ପେନ୍‌ସନ୍ ଟଂକାରେ ଘର ଚଳେ । ସେ ବି ଚଳୁଛି । କାହିଁକି ତା'ର ଦ୍ୱିଧାବୋଧ ଆସିବ ସେଥିପାଇଁ ? ତା'ର କି ଦାୟ ପଡ଼ିଛି ଘର ପାଇଁ ? ବରଂ ସେ ମନେକରେ ଏଇ ବୟସମାନ ସବୁ ଯେପରି ନଷ୍ଟ ହୋଇଯାଇଛି ଭଉଣୀ ଚାପରେ । କୌଣସି ପ୍ରତିକ୍ରିୟା  ପ୍ରକାଶ ନକରି ମୁଣ୍ଡପାତି ସହିବାରୁ ସବୁ ଦୁର୍ଦ୍ଦଷା ତା'ର । ଏଇ ରମଣ କ୍ଲବକୁ ସେ ପନ୍ଦର ବର୍ଷ ବୟସରୁ ଯାଉଥିଲା । ଆରମ୍ଭ କରିଥିଲା ବଡ଼ ଉଦ୍ଦୀପନାରେ ତା'ର କ୍ୟାରିଅର । ସ୍ୱପ୍ନ ଦେଖୁଥିଲା ହେବ କ୍ରିକେଟ ପ୍ଲେୟାର । ଅଥଚ କ'ଣ ସେ ହେଲା ? କିଏ ନଷ୍ଟ କରିଦେଲା ତା'ର ସ୍ୱପ୍ନ ? ଖାଲି ପେଟର ଦାୟରେ ଏମାନେ ତା' ଉପରେ ଚିନ୍ତାର ପାହାଡ଼ଟାଏ ଲଦି ଦେଲେ । ପେଟପାଟଣା କଥା ଆଗ ନାଁ ବଲ ବାଡ଼େଇବା ? ଅଥଚ ଏଇ ଖେଳର ଆନନ୍ଦ କେଉଁଠି ସେ ପାଇବ ପେଟ ପାଇଁ ଚାକିରି ବା ବ୍ୟବସାୟ ପାଇଁ ନିଜକୁ ଗଢ଼ି ! ତା' କିଏ ବୁଝେ ?

ଏଇ କ୍ଲବରେ ସେତେବେଳେ ଭାରତର ବିଖ୍ୟାତ ଜୁନିଅର ଖେଳାଳୀ ରଣଜୀବ୍ ବିଶ୍ୱାଳ ଖେଳୁଥିଲେ । ତାଙ୍କ ଟିମ୍‌ରେ ସେ ଥିଲା । ଏହା କ'ଣ କମ୍ ଗୌରବର କଥା । ନପାଉ ପଛେ ରଣଜୀ ଟ୍ରଫି ପାଇଁ କି ଅନ୍ୟ ଟ୍ରଫି ପାଇଁ ଖେଳିବାକୁ, କିନ୍ତୁ ପଡ଼ିଆରେ ପଂହଚିଗଲେ ତ କେତେ ଖୁସୀ, କେତେ ଆନନ୍ଦର କଥା । ସେକଥା କିଏ ବୁଝିବ ? ସବୁବେଳେ ଖିଟ୍‌ଖିଟ୍ ହୋଇ ଲାଗିବା ତା' ପଛରେ ଅଭ୍ୟାସ ହୋଇଗଲାଣି ଆଦିତ୍ୟ ଏବଂ ବାଣୀବ୍ରତାଙ୍କର । ''ଆରେ ତୋ ବାପା କ'ଣ କୋଟିପତି ହୋଇଛି ନାଁ ଲକ୍ଷପତି ? ତୁ ଯାଇ ଆରାମରେ ବଲ୍ ବାଡ଼େଇ ଘରକୁ ଫେରିବୁ ? ତୋ ପେଟ କଥା ଚିନ୍ତା କର ।''

ସୌମ୍ୟ ନିଦା ବିଷ୍ଟୁ । ତା'ର କଟୁକ୍ତିକୁ ଖାତିର ନଥାଏ । ଘରର ଦାୟିତ୍ୱ ସେ କାହିଁକି ନେବ ? ଏଇ ଘର ପାଇଁ ତା'ର କ୍ରିକେଟ ଗଲା । ସେ ବରବାଦ ହୋଇଛି କୁହ ।

ସୌମ୍ୟ ବୁଝେ ନାହିଁ ତା'ର କ୍ରିକେଟରେ ଯୋଗ୍ୟତା ଅଯୋଗ୍ୟତା କଥା । କି ସାଧନାର କଥା । ସମସ୍ତେ ତେନ୍ଦୁଲକର ହୋଇପାରିବେ ନାହିଁ । ତା'ସେ ବୁଝେ ନା । ମଧ୍ୟବିତ୍ତ ପରିବାରର ସେଣ୍ଟିମେଣ୍ଟକୁ ସେ ଖାତିର କରେନା । ତା' ଚୁପ୍ ରହିବାରୁ ମଧ୍ୟ ଜଣାପଡ଼େ ନାହିଁ ତା' ଭିତରେ ଭୟ ରହିଛି କି ଅବଜ୍ଞା । ପାଟିଖୋଲି ଜଣେ ପ୍ରତିକ୍ରିୟା ପ୍ରକାଶ କଲେ ଭଲ । ହେଲେ ନୀରବରେ ପ୍ରତ୍ୟାଖାନ କରି ଚାଲିଯିବା ନିଜର ଗନ୍ତବ୍ୟ ପଥରେ, ତାହା କଷ୍ଟ ଦିଏ ସମସ୍ତଙ୍କୁ ।

ଭଉଣୀ ପାଇଁ ତା'ର କ୍ରିକେଟ କ୍ୟାରିଅର ଅବା ନଷ୍ଟ ହୋଇଛି । ଉଦା ବୁଲିବାର ବୟସରେ କ୍ରିକେଟ ବଲ ପିଟି ଜୀବନକୁ ଆନନ୍ଦର ମହୋତ୍ସବରେ ରଂଗୀନ୍ କରିବାର ନିଶାକୁ ଜେଲଖାନାରେ ପୂରେଇ ଦେଇଛି ପଇସା ଅର୍ଜନର ପନ୍ଥା ଦେଖାଇ । ନହେଲେ ସେ କେଉଁ ଯାଉଥିଲା ପଲିଟେକ୍‌ନିକ୍‌ରେ ଟି.ଭି ମେକାନିକସ୍ କୋର୍ସ ପଢ଼ିବାକୁ ଦୁଇବର୍ଷ ।

ସେ ଦିନ ସେ କମ୍ କଷ୍ଟ ପାଇନି । ହେଲେ ଭଉଣୀଙ୍କୁ ପ୍ରତ୍ୟାଖାନ କରିବାର ସାହାସ ସେ କରି ପାରି ନଥିଲା । ଚୁପ୍‌ଚାପ୍ ମାନି ନେଇଥିଲା କଥାଟା । ଆଡ଼ମିସନ କରିଥିଲା ଟେକ୍‌ନିକାଲ୍ ଶିକ୍ଷାରେ । ପଇସା ରୋଜଗାର କରି ନିଜ ଗୋଡ଼ରେ ଠିଆହେବାର ସହଜ ରାସ୍ତାରେ । ତା'ର ବ୍ୟଗ୍ରତା କଥା କେହି ବୁଝିବେନି । ଥରେ ଖେଳର ପ୍ରାକ୍‌ଟିକ୍‌ସ ଛାଡ଼ିଗଲେ କେଡ଼େ ଅସହଜ ହୋଇଯିବ ଅନ୍ୟମାନଙ୍କ ସଂଗରେ ପ୍ରତିଯୋଗୀତା କରିବା ତା' ବୁଝିବେନି ବାପା, ବୋଉ କି ଭଉଣୀ । ତା' ସୌମ୍ୟ ଜାଣେ ।

ପାଠଶାଠ ତା' ଦ୍ୱାରା ହେଲାନି । ପିଲାଟିଦିନୁ ଡରୁଆ । କାହା ସାଂଗରେ ଯୁକ୍ତିତର୍କ କରିପାରେ ନାହିଁ । ନିଜର ଦାବୀ ଅନ୍ୟମାନଙ୍କପରି ଉପସ୍ଥାପିତ କରିପାରେ ନାହିଁ । ସ୍ୱାର୍ଥପର ହୋଇ କୌଣସି ଜିନିଷ ଛଡ଼େଇ ନେଇପାରେ ନାହିଁ । ସବୁବେଳେ ତା'ର ଥିଲା ଭୀରୁ ଭାବ । ମାଟ୍ରିକ ପାଶ କରିବା ମଧ୍ୟ ଥିଲା ତା'ର ଆତ୍ମ-ପ୍ରତ୍ୟୟର ବାହାରେ । ଯେଉଁ ଦିନ ମାଟ୍ରିକ ପାଶ କରିଥିଲା, ସେ ଦିନ ସେ ଅବା ଆତ୍ମ-ପ୍ରତ୍ୟୟ ଫେରି ପାଇଥିଲା । ମଣିଷଟିଏ ହୋଇ ସମସ୍ତଙ୍କ ସଂଗରେ ମିଶିପାରିବ, ହସ-ଖୁସୀ କରିପାରିବ । ନଚେତ୍ ଅଲଗା ଗ୍ରହର ପ୍ରାଣୀପରି ରହୁଥିଲା ନିଜକୁ ଦୂରେଇ ନେଇ । କାହା ସାମ୍ନାକୁ ଯିବାକୁ ଭୟ କରୁଥିଲା । ପାଠକୁ ନେଇ ପଦପଦକେ ଉପଦେଶ ଶୁଣାଉଥିବା, ଅପମାନିତ କରୁଥିବା ମଣିଷଙ୍କ ଠୁ ସେ ଦୂରେଇ ରହୁଥିଲା । ଅନ୍ୟମାନେ ଭଉଣୀଙ୍କୁ ଫାଙ୍କି ଦେଇ ଚାଲିଯାଉଥିଲେ ରୋଷେଇ କଲାବେଳେ । ସେ ଭୟରେ ସାହାଯ୍ୟ କରୁଥିଲା । ମନା କରିବାର ଶକ୍ତି ତା'ର ନଥିଲା କାହିଁକି ନାଁ ସେ ଭଲ ପଢ଼େ ନାହିଁ ।

ହେଲେ ଆଜି ସେ ଭୟ କାହିଁକି କରିବ ? ସେ ଜଣେ ଦକ୍ଷ ମେକାନିକ୍ସ୍ ହୋଇଯାଇଛି । ଭଉଣୀ କଲିକତାରେ ଥିବାବେଳେ ସେ ସେଠି ପଡ଼ିରହିଥିଲା ତାଙ୍କୁ ଜଗି ରହିବା ପାଇଁ । ମାତ୍ର ଷୋଳବର୍ଷ ବୟସଥିଲା ତା'ର । ଏତେବଡ଼ ବିରାଟ ସହରର ବୁକୁ । କୋଟିକୋଟି ମଣିଷର ଭିଡ଼ ଦେଖିଲେ ଜଣେ ନୂଆ ହୋଇ ତା' ବୟସର ପିଲା ଭୟ ପାଇଯିବ । ତା'ର ମଧ ସେଇଆ ହୋଇଥିଲା । କିଛି ଦିନ ଘରେ ବସିରହିଲା ପରେ ସେ ବାହାରିଲା । ଦୁଇବର୍ଷ ଗାଡ଼ିମଟରରେ ଠେଲାଠେଲି ଭିତରେ କଲେଜ ଗଲା । ତା'ର ଟେକ୍‌ନିକାଲ ସାଇଡ଼ରେ ଆଗ୍ରହ ଦେଖି ଇନ୍‌ଷ୍ଟିଚ୍ୟୁଟର ଡ଼ାଇରେକ୍ଟର ମିଃ ଚାଟାର୍ଜି ତାକୁ ପୁଅପରି ଭଲପାଉଥିଲେ । ଅସଲ କଥା ହେଲା ତା'ର ଧୈର୍ଯ୍ୟଥିଲା ବେଶୀ । ମନ ନଥିଲା ଉଡ଼ନ୍ତା ପକ୍ଷୀ । ମନଦେଇ ଲାଗିପଡ଼ି ସେ ଗୋଟାଏ କାମ କରୁଥିବ ତ କରୁଥିବ । ସେ ସେହି ଧୈର୍ଯ୍ୟ ଦେଖି ବହ୍ୱଳିତ ହୋଇ ପଡୁଥିଲେ । ସେ କଲର ଟି.ଭି କୋର୍ସରେ ଫାଷ୍ଟ ହେଲା । ଚାଟାର୍ଜି ଖୁସୀହେଲେ । ତାଙ୍କ ଘରେ ଆସି ପ୍ରାକ୍‌ଟିସ କରିବାକୁ ଅନୁମତି ଦେଲେ । କେତେ ପ୍ରକାର ସାହାଯ୍ୟ କଲେ କାମ ଶିଖିବାପାଇଁ । ତା' ସାଙ୍ଗ ସୁରିନ୍ଦର ମଧ ଥିଲା ତା' ସାଙ୍ଗରେ । ଦୁଇ ଜଣଙ୍କୁ ସେ ଅତି ଆଦର କରୁଥିଲେ ।

କ୍ଲାସରେ ଫାଷ୍ଟ ହେବାପରେ ଅନ୍ୟ ଶିକ୍ଷକ ମାନେ ତାକୁ ଭଲ ନଜରରେ ଦେଖିଥିଲେ । ଖୁସୀ ହୋଇଥିଲେ । ଡାଇରେକ୍ଟର ଆହୁରି ଗୋଟାଏ ବଡ଼ ଦୋକାନଟାଏ ଯୋଗାଡ଼ କରିଥିଲେ ପାର୍କସକର୍ସରେ । ସେଠିକୁ ସେ ଯାଇ ବେଶୀ କାମ ଶିଖିବାର ସୁଯୋଗ ପାଇଥିଲା । ମନଦେଇ ସେ କାମ କରିଯାଏ । ସକାଳ ସାତରୁ ରାତି ନ'ଟାଯାଏ । ରବିବାରମାନ ମଧ ଛାଡ଼େ ନାହିଁ । ସବୁ ସମୟ ସେ ଅଜାଡ଼ି ଦେଇଛି ଟି.ଭି ସଜାଡ଼ିବା ପଛରେ । ନିଜର ଅଭିଜ୍ଞତାର ସୁଦୂର ପ୍ରସାରୀ ଭୂମିଉପରେ ଠିଆହୋଇ ଜଣେଇଛି ତା'ର ଦକ୍ଷତାକୁ । ଆଉ ମଧ ଦେଖିଛି ପାର୍କସକର୍ସରେ ବାସ କରୁଥିବା ମହାନଗରୀର ରୂପକୁ । ଜାଗା ଟିକିଏ ବିନା କେମିତି ଲୋକମାନେ ଚଳୁଛନ୍ତି । ଖଟ ଉପରେ ଜଣେ ଶୋଇଲାବେଳେ ଖଟ ତଳେ ଅନ୍ୟମାନେ ଶୋଉଛନ୍ତି । ଏ ଏକ ବିଚିତ୍ର ମହାନଗରୀ । ଲୋକମାନଙ୍କର କଷଣ, ଦୁର୍ଦ୍ଦଶା, ସଂଘର୍ଷର କେଉଁଠି ସୀମାନାହିଁ, ଆଉ କେଉଁଠି ବଡ଼ ବଡ଼ ମହଲାର ଫ୍ଲାଟ ଭିତରେ ସ୍ୱଚ୍ଛନ୍ଦ, ଅନାୟସ ଜୀବନ ବହି ଚାଲିଛି । ଗଳି ଉପଗଳି ବୁଲି ସେ ଦେଖିଛି ଲକ୍ଷ କୋଟି ମଣିଷର ଜୀବନ ଯନ୍ତ୍ରଣା, ସଂଘର୍ଷକୁ । ସେ ଅବାକ୍ ହୋଇଛି । ଭଉଣୀ କ'ଣ ଦେଖିଛନ୍ତି ? ଫ୍ଲାଟରେ ରହି, ସକାଳ ନ'ରୁ ବସ ଧରି, ଏୟାର କଣ୍ଡିସନ ଅଫିସରେ ବସି, ଅଫିସର ହୋଇଗଲେ କ'ଣ ଦେଖିହୁଏ ମହାନଗରୀର

ଏଇ ଜ୍ୱାଳାମୟ ସଂଘର୍ଷକୁ ? ହଁ ହୋଇପାରେ । ଦୂରରୁ ଦେଖିଲେ ଲାଗିବ ଅଜସ୍ର କୋଠାଘରରେ ଭର୍ତ୍ତି ଏ କଲିକତା ମହାନଗରୀ ବ୍ରିଟିଶ ଉପନିବେଶର ନମୂନାହୋଇ, ଚିତ୍ରଟିଏ ହୋଇ ଠିଆହୋଇଛି । ତା' ଭିତରେ ସଂଘର୍ଷର କାହାଣୀ କେତେ ଲେଖକର ସାହିତ୍ୟ ପୃଷ୍ଠାରେ ଲିପିବଦ୍ଧ ହୋଇଛି । ମଣିଷ ପଢ଼ାର ସାମଗ୍ରୀ ହୋଇଛି । ଚଳଚ୍ଚିତ୍ରର ଛବି ହୋଇପାରିଛି । ହେଲେ ସେ ପ୍ରତ୍ୟକ୍ଷ କରିଛି ବାସ୍ତବତା । ଭୟଙ୍କର ସେହି ବାସ୍ତବତା । ଚାଲିଚାଲି ବୁଲିଛି ସେ ଏଠି । କେବଳ ମଣିଷର ପୀଡ଼ା ତାକୁ ଟାଣିଛି । ତା' ଭିତରର ବୈଚିତ୍ର୍ୟବୋଧ ତାକୁ ଆକର୍ଷଣ କରିଛି । ସେ ଦିନ ରାତି ବୁଲିଛି ତାକୁ ଅନୁଭବିବାକୁ । ଟି.ଭି. 'ଟେଲିଗ୍ରାଫ' ଖବରକାଗଜର ପୃଷ୍ଠାରୁ କେବଳ ଦେଖିନି କି ପଢ଼ିନି । ନିଜେ ଅନୁଭବିଛି ।

କଟକ ଫେରି ଆସିବାରେପରେ ସେ ମାନସିକ ପ୍ରସ୍ତୁତି ନେଇପାରିନାହିଁ କ'ଣ କରିବବୋଲି । କେଉଁଠୁ ଆରମ୍ଭ କରିବ ତା'ର ଯାତ୍ରା । କିଏ ତାକୁ ଆର୍ଥିକ ସାହାଯ୍ୟ କରିବ ନୂତନ ପନ୍ଥାରେ ଚାଲିବାକୁ । ତା' ତ କେହି କହି ନାହାନ୍ତି ? କିଏ ସକ୍ଷମ ଅଛି ତାକୁ ଗୋଟାଏ ଦୋକାନଟାଏ କରି ବସାଇ ଦେବାକୁ କଟକ ସହରରେ ? କେଉଁ ବାପା ନାଁ ଭାଇ ନାଁ ଭଉଣୀ ? ନିଜେ ମଧ୍ୟ ସେ କେମିତି ସାହାଯ୍ୟ କରିପାରେ ନିଜକୁ । ବରଂ କ୍ରିକେଟ୍ ବଲ୍‌ର ଏ ଚମତ୍କାରିତାକୁ ସେ ଆବୋରି ନେଇଛି । ଖେଳାଳୀ ହେବାର ଭଙ୍ଗାସ୍ୱପ୍ନ ଉପରେ ଠିଆ ହୋଇ ନିଜକୁ ସାମିଲ କରୁଛି ବଂଚିବାର ଆନନ୍ଦ ପାଇଁ । ସେଥିରେ କ୍ଷତି କ'ଣ ?

ଏଇ କେତେଦିନ ହେବ ତାକୁ ଗୋଟାଏ ଦୋକାନର କାମ କରିବାକୁ ଜୁଟେଇ ଦେଇଛନ୍ତି ଆଦିତ୍ୟଙ୍କର ମାଲିକ । ସେ ଏକମାତ୍ର ଡିଲର ଶ୍ୟାମ ଆଣ୍ଟିନାର କଟକ ସହରରେ । ସୌମ୍ୟ ଏବେ ବାହାରିଯିବ କାମକୁ । କାମଟା ଜୁଟେଇ ଦେଲେ ସେ ଖଟିପାରିବ । ସେଇଟା ତା'ର ବଡ଼ ଗୁଣ । କିନ୍ତୁ କାମଟାଏ ପାଇବାର ସଂଘର୍ଷ, ଯୋଜନା ସେସବୁ କରିବାର ସାମର୍ଥ ତା'ର ନାହିଁ । ବଡ଼ ସହଜଭାବେ ଜୀବନକୁ ମାନି ନେଉଥିବା କେତେଜଣଙ୍କ ଭିତରେ ସେ ମଧ୍ୟ ଆସେ । ସଂଘର୍ଷ କରିବା ବଡ଼ ଦୁରୂହ ବ୍ୟାପାର ତା' ପାଇଁ । ବରଂ ଶଗଡ଼ ଗୁଳାରେ ଚାଲିଲେ ଚାଲୁଥିବ ଆବାହମାନ କାଳ ଧରି ।

ତା'ର ଏଇ ସଂଘର୍ଷ ରହିତ ମନଟିଏ କେବଳ ନିଜର ବୃତ୍ତିଗତ ପାଇଁ କାହିଁକି, ନିଜର ପ୍ରକୃତିଗତ । ଏମିତି କି ସେ କାହାକୁ କଡ଼ାକଥା ପଦେ କହିପାରେନି । କି ଟି.ଭିଟାଏ ସଜାଡ଼ିଦେଲେ ପଇସା ଦିଅନ୍ତୁ ବୋଲି ମାଗିପାରେ ନାହିଁ । କେଜାଣି ଏତେ ଶାନ୍ତ ଭଦ୍ର ଆଉ ନମ୍ର ସେ ହେଲା କେମିତି । ଅନ୍ୟ ଭାଇ, ଭଉଣୀଙ୍କର ରୁକ୍ଷତା ପ୍ରକାଶିତ

ହୁଏ ରାଗିଗଲେ ଅଥଚ ତା'ର ରୁକ୍ଷତା ଆଦୌ ନଥାଏ । ନିର୍ଲୋଭ, ନିରହଂକାର, ନିସ୍ୱାର୍ଥପର ମଣିଷଟିଏ ହୋଇ କେମିତି ତିଆରି ହୋଇଛି । ତା'ର ଏଇ ସରଳତାର ସୁଯୋଗନେଇ ପଡ଼ାର ଲୋକ, ଚିହ୍ନା ପରଚୟ ସାଙ୍ଗସାଥୀ, କେଉଁଠି ସାମାନ୍ୟ ପରିଚୟ ଦେଇ ଟଙ୍କା ନଦେବାର ବାହାନାକରି ଚାଲିଯାନ୍ତି ତା'ଠୁ କାମଟା ହାସଲ କରିନେଇ । ସେ ମାଗିପାରେନା ପାଉଣା । କି ଅଦ୍ଭୁତ ତା'ର ମାନସିକତା । ମୁହଁ ଫିଟାଇ ମାଗିବୁ ନାହିଁ ତୋ ପରିଶ୍ରମର ମୂଲ୍ୟ ଅନ୍ତତଃ ! ଏ କି କଥା । ଯେତେ ଗାଳି ଦେଲେ ବି ପିଲାଟାର ଉତ୍ତର ବି ନାହିଁ । କ'ଣ ପଇସା କିଏ ଦେଉଛି କି ନାହିଁ ଜଣା ପଡୁନି ।

ଏବେ ସେ ବାହାରିଯିବ ବିହାରୀ ଦେକାନକୁ । ରାତି ଦଶଟାରେ ଆସିବ । ପ୍ରାଇଭେଟ୍ କାମରେ ମନଦେଇ ଖଟି ପାରିବ ସକାଳ ସଂଧ୍ୟା ହୋଇ ଦଶଘଣ୍ଟା । ରାତି ଦଶଟାରେ ଫେରେ । ବେଳେବେଳେ ଆହୁରି ଡ଼େରିହୁଏ । ମଝିରେ ଖରାବେଳେ ଆସେ ଖାଇବାକୁ । ପୁଣି ଚାରିଟା ବେଳୁ ଯିବ ରାତି ଦଶଯାଏ । ସବୁତକ ଶ୍ରମର ଲାଭ ଉଠାଇବ ବିହାରୀ । ଅଥଚ ସେ ଖଟୁଥିବ ଆଖି ମାଡ଼ି । ଚାହିଁଥିବ କିଟିମିଟିଆ ସର୍କିଟକୁ । ମାସ ଶେଷରେ ଦେବ ହଜାର ଟଙ୍କା ଦରମା । ଏ ଗୋଟାଏ ଅନ୍ୟ ଉପରେ ନିର୍ଭର କରି ଜୀବନକୁ ଚଳେଇନେବା କଥା । ସମୟ ବହିଗଲେ ଯାଏ । ନିଜେ କଲେ ଦୋକାନଟାଏ ଏସବୁ ଲାଭ ତା'ର ହୁଅନ୍ତା । ହେଲେ ସେ ଏକଥା କରିପାରେ ନାହିଁ । କହିଲେ ଶୁଣେ ନାହିଁ । ସେ ମଧ୍ୟ କାନ ଦିଏ ନାହିଁ ଯେତେ ଛିଗୁଲେଇଲେ ବି । ଆତ୍ମ-ବିଶ୍ୱାସ ହୀନତା ଆତ୍ମ-ନିର୍ଭରଶୀଳତାକୁ ଅଟକାଇ ଠିଆ ହୋଇଥାଏ । ଅଲଗା ଦୋକାନପାଇଁ ଆର୍ଥିକ ସହାୟତା ସେ କାହାକୁ ମାଗିବ ? ତେଣୁ ବାଦ ଦିଆଯାଉ ସେସବୁ ସଂଘର୍ଷ ମନରୁ । ଯୌବନ ହିଁ ଶକ୍ତିର ସମନ୍ୱ । ବଳ ଖଟାଇବାର ସମୟ । ଖଟି ପଇସା ରୋଜଗାର କରିବାର ସମୟ । ସେ ବିଷୟରେ ଉଦ୍‌ଯୋଗ ନାହିଁ କହି ତା ଆଡ଼କୁ ଆଙ୍ଗୁଠି ଦେଖେଇଲେଣି କେତେ । କେତେ ଛି.ଛିକାର ଭିତରେ ତାକୁ ଅତିକ୍ରମ କରିବାକୁ ପଡ଼ିଲାଣି । ଅଥଚ ସେ ନିରୁଦ୍‌ବିଗ୍ନ, ଅଟଳ ମହାମେରୁ ପରି ସବୁ ଶୁଣି ପୁନଶ୍ଚ ଭୁଲିଛି । କେତେ କଟୁକ୍ତି ମଧ୍ୟ ତା' ପ୍ରତି ହୋଇଛି । ''ବାପାର ପେନସନ୍‌ରେ ପେଟ ପୂରିଯାଉଛି ତ ନିଜେ କାହିଁକି ଚେଷ୍ଟା କରିବ'' ।

ଆରେ.... । ବାପାର ପେନ୍‌ସନ୍ କାହାକୁ ଡାକୁଣୀ ନ ଦେଇଛି ଯେ ସେ ଅଧିକା ହେଇଗଲା । ବରଂ ସତୁରୀ ବର୍ଷ ବୟସରେ ସେ ବାପା, ମାଙ୍କ ପାଖରେ ନିର୍ଭର ଆଶ୍ରୟଟିଏ ହୋଇ ରହିଛି । ମେରୁଦଣ୍ଡ ହୋଇ । କାଲିଯଦି କିଛି ହୋଇଯାଏ ସେ ହିଁ ରହିଥିବ ଏଠି ଦେଖିବାକୁ ଏମାନଙ୍କୁ । ଗାଁରୁ ବଡ଼ ଭାଇ ଦୌଡ଼ି ଆସିବେ କି ନାଁ ମଝିଆଁ

ଭାଇ ବନ୍ଧମୁଣ୍ଡାରୁ ପାଞ୍ଚଶହ କି:ମି ଦୂରରୁ ! ଏମିତି କି ଭୁବନେଶ୍ୱରରେ ରହୁଥିବା ଭଉଣୀ ଆଉ କଲେଜରେ ପଢୁଥିବା ସାନ ଭାଇଟି କ'ଣ ଦୌଡ଼ି ଆସିବେ ? ଅନ୍ତତଃ ପହଞ୍ଚୁ ପହଞ୍ଚୁ ଘଣ୍ଟାଏ ଉପରେ ଚାଲିଯିବ ।

ବାଣବ୍ରତା ଖାଇବାକୁ ବାଢ଼ିଦେଲେ । ଗୁଁ ଗାଁ ହୋଇ କହିଲେ-ବାପଟା ଏତେ ଦହଗଞ୍ଜ ହେଉଛି । ତୁମମାନଙ୍କ ପାଇଁ ଏତେ କଷ୍ଟ କରୁଛି, ଅଥଚ ତୁ ସେ ମାଛବାଲାର ପଇସାଟା ଦେଲୁନି ଆଜି । ସେ ଆସିଥିଲା । କିଛି ତ ବାପକୁ ଦେବ । ନାଁ ଏଠି କେଉଁଠି ଧନ ପୋତା ହୋଇଛି  ବସି ଖାଇବ ।

ଏ କଥାର ଉତ୍ତର ସେ ବା କ'ଣ ଦେବ ? ଚିରକାଳ ସେ ଏମିତି ମୌନ, ନିରୁତ୍ତର । ସେ ପାଠ ବେଶୀ ପଢ଼ିନାହିଁ । ଚାକିରି କରି ନାହିଁ ଅନ୍ୟମାନଙ୍କ ପରି, ବାବୁଆଡ଼ା ଦେଖାଇବ କାହା ପାଖରେ । ପ୍ରକୃତରେ ତା'ର ବା କେଉଁ ଭଲ ପ୍ୟାଣ୍ଟ, ସାର୍ଟ, ଜୋତା ଏସବୁ ଅଛି ? କେଉଁଠି ଅଳ୍ପ ଅଳ୍ପ ହୋଇ ଟଙ୍କା ହଜାରଟା ଶେଷ ହୋଇଯାଉଛି ସେ ମଧ୍ୟ ମନେ ରଖିନି । ଆଉ ଏବେ ତିନିଶହ ଟଙ୍କା କେଉଁଠୁ ଆଣିବ ମାଛବାଲାକୁ ଦେବାକୁ ।

— କ'ଣ ମୋ କଥା ଶୁଣାଗଲା ନାଁ ନାହିଁ ।

— ହଁ ଦେଖିବା କହି ସୌମ୍ୟ ବାହାରିଗଲା ସ୍କୁଟର ନେଇ ।

— ସ୍କୁଟର ତେଲ ପୋଡ଼ିବାରେ ତ ସବୁ ସାରୁଛୁ । ଯାହାର ରୋଜଗାର ନାହିଁ ତା'ର ଏତେ ସ୍କୁଟର ଚଲାଇବାର ସଉକି କାହିଁକି ।

ସୌମ୍ୟ ବାହାରି ଯାଉଥିଲା । ଆଉ ବାଣାବ୍ରତାଙ୍କ ଶବ୍ଦ କ୍ଷେପଣ ଅପଣା କାନକୁ ଫେରିଆସୁଥିଲା ପ୍ରତିଧ୍ୱନି ହୋଇ ।

ସେ ବିଡ଼ ବିଡ଼ ହେଲେ-ମୋ କଥା କ'ଣ ଶୁଣିଲା । ଏ ଘରେ ମୋ କଥା କିଏ ବା ଶୁଣେ ?

ଦୋକାନରେ ପହଞ୍ଚିଲାବେଳକୁ ପ୍ରସାଦବାବୁ ଆସି ଯାଇଥିଲେ । ଖୁବ୍ ଭଦ୍ରଲୋକ । ସୌମ୍ୟର ଚରିତ୍ରବତା ତାଙ୍କୁ ମୁଗ୍ଧକରେ । ପ୍ରସାଦବାବୁ ଜଣେ ସାଧାରଣ ବେପାରୀ ଖାଲି ନୁହଁନ୍ତି । ଖୁବ୍ ଉଚ୍ଚ ଶିକ୍ଷିତ । ଫିଜିକ୍ସରେ ଏମ:ଏସ୍:ସି ପାଶ କରିଛନ୍ତି । ଏକଦା କେଉଁ ପ୍ରାଇଭେଟ୍ କଲେଜରେ ଅଧ୍ୟାପକ ଥିଲେ । ତାକୁ ଛାଡ଼ିଦେଇ ଜଏନ୍

କରିଥିଲେ ଟ୍ରାନସପୋର୍ଟ କଂପାନୀରେ । ଟ୍ରାନସପୋର୍ଟ କଂପାନୀ ପଠାଇଥିଲା କଟକ ବ୍ରାଞ୍ଚକୁ । ହେଲେ ସେଠି ରହିବାକୁ ମନ ଲାଗିଲାନି । ସେ ଚାକିରି ଛାଡ଼ିଲେ । ପରର ଅଧୀନରେ ରହିବା ଆଉ ହେଲାନି । ନିଜର ବ୍ୟବସାୟ ଆରମ୍ଭକଲେ ଏଇ କଟକରେ । ଘର ବିହାରର ପୁରନିଆରେ । ବାପା, ମା, ଭାଇ, ଭାଉଜ ରହିଲେ ଦୂରରେ । କିନ୍ତୁ ଗାଁର ମୋହ କି ଛାଡ଼ିହୁଏ ? ମଣିଷ ପେଟପାଟଣା ପାଇଁ ପୃଥିବୀର ଏ ମୁଣ୍ଡରୁ ସେମୁଣ୍ଡଯାଏ ଗଲେ ବି ଭୁଲିପାରେ ନାହିଁ ଜନ୍ମ ସ୍ଥାନକୁ । ଆପଣା ଜାଗାକୁ । ତା'ର ପାଣି, ପବନ, ନଦ, ନଦୀ, ପାହାଡ଼ ଜଙ୍ଗଲକୁ । ଏବେ ବି ସେ ଝୁରି ହୁଅନ୍ତି ନିଜ ଗାଁକୁ । ଘରକୁ ଯାନ୍ତି ବର୍ଷକୁ ତିନି/ଚାରିଥର । ଖୁବ୍ ଭଦ୍ର, ନମ୍ର, ପରୀଶୀଳିତ । ଯଦିଓ ବୟସ ଆସି ବୟାଳିଶି ହେଲାଣି ।

କଟକ ସହରରେ ତାଙ୍କର ବ୍ୟବସାୟରେ ଆଜି ସେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରନ୍ତି । ବାଣିଜ୍ୟରେ ହିଁ ଲକ୍ଷ୍ମୀ ଯାହା ପୂର୍ବ ସୂରୀମାନେ କହିଯାଇଛନ୍ତି ତା' ଅକ୍ଷରେ ଅକ୍ଷରେ ସତ । କଟକରେ ତାଙ୍କର ନିଜର ପ୍ଲଟ କିଣିପାରିଛନ୍ତି । ଦୁଇମହଲାର ବିରାଟ ସୌଧ ନିର୍ମାଣ କରିଛନ୍ତି । ଦାମୀ ମାର୍ବଲ୍‌ରେ ବିଛା ଏଇ ଘର ଆଖି ଝଲସାଇ ଦିଏ । ବାହାରୁ ଆସି ନିଜର ପୃଷ୍ଠଭୂମି କରିନେଇଛନ୍ତି ଅନ୍ୟ ସହରକୁ । କେବଳ ମେହନତି, ଚାଲାକ ଚତୁର ହୋଇ ବିଜିନେସ୍ ମ୍ୟାନେଜମେଣ୍ଟରେ । ନହେଲେ ଓଡ଼ିଆ ଜାତି ହିଁ ନିଜ ସହରକୁ କବଳିତ କରିପାରିଥାନ୍ତା । ସେମାନେ ନୁହେଁ ।

ଏତେ ପଇସାଥିଲେ ବି ସେ ସବୁବେଳେ ଦରଦୀ, ବିବେକି ମଧ୍ୟ । ସୌମ୍ୟର ସଚ୍ଚୋଟତା ଉପରେ ତାଙ୍କର ବଡ଼ ଭରସା । ମନଦେଇ ସବୁବେଳେ କାମ କରୁଥିବ ନୀରବରେ । ତାଙ୍କ ପୁରୁଣା ମିସ୍ତ୍ରୀଙ୍କର ଭୁଲ ଭଟକା ହୁଏ । ହେଲେ କଂପ୍ଲିକେଟେଡ୍ ସର୍କିଟ୍‌ରେ ଡ଼ିଫେକ୍ଟ ସୌମ୍ୟ ଚଟାପଟ ବୁଝିପାରେ । ତା' ସେ ଜାଣନ୍ତି । କିନ୍ତୁ ପୁରୁଣା ଲୋକଙ୍କ ଉପରେ ତାଙ୍କୁ ଲିଫ୍ଟ ଦେଇ ବସାଇଲେ ଖରାପ ଭାବିପାରନ୍ତି ଅନ୍ୟ କର୍ମଚାରୀ । ସେଥିପାଇଁ ସେ ଯାହା ଚାଲିଛି ସେମିତି ଚଳାଇଛନ୍ତି ।

ସୌମ୍ୟ ସଚ୍ଚୋଟ । ନିର୍ଲୋଭ । ଯେଉଁଠି ଯାହାକାମ କରେ ଯେତିକି ପାଉଣା ସେ ତାକୁ ନିଜଆଡୁ ଦେବେ ସେତିକି ଗ୍ରହଣ କରେ । କାହା ପାଖରେ ଧପାବାଜ କଥାକହି ନିଜପାଇଁ ଦି ପଇସା ନିଏ ନାହିଁ । କଡ଼ାଗଣ୍ଡା ହିସାବ କରି ସେ ତାଙ୍କୁ ପଇସା

ଫେରାଏ । ସେଥିପାଇଁ ତାକୁ ଆଜିକାଲି ଶାମ୍ ଆଣ୍ଟିନା ସଜାଡ଼ିବାକୁ ସାରା ଓଡ଼ିଶାର ବିଭିନ୍ନ ଜାଗାକୁ ପଠାନ୍ତି । ନୂଆ ଇନ୍‌ଷ୍ଟାଲ କରିବାକୁ ମଧ୍ୟ ସେ ଯାଏ । ଦିନକୁ ଶହେ ଟଙ୍କା ଅଧିକା ପାଏ କେବଳ । ସେହି ମୌକାରେ ବଡ଼ବଡ଼ ହୋଟେଲରେ ରହିବାର ସୁଯୋଗ ପାଇଛି ସୌମ୍ୟ । ବିଭିନ୍ନ ଜାଗା ଦେଖିପାରିଛି ।

ପ୍ରସାଦବାବୁ ତାକୁ ଡାକିଲେ । ସୌମ୍ୟ ତଳକୁ ମୁହଁକରି ଗୋଟାଏ ଆଇ.ସି ଢଳେଇରେ ବ୍ୟସ୍ତ । ସେ ମୁହଁ ଉଠାଇଲା କ'ଣ ଗୋଟାଏ ଭୟର ଆଶଙ୍କା କରି ।

ପ୍ରସାଦବାବୁ କହିଲେ-ତୁମେ ଟିକେ ବ୍ୟାଙ୍କ୍‌କୁ ଯାଅ । ପଇସା ଉଠାଇ ଆଣିବ ।

ସୌମ୍ୟ ମେକାନିକ୍‌ସ । କେବଳ ଟି.ଭି ସଜାଡ଼ିବା ତା'ର କାମ । ସେ କାହିଁକି ବ୍ୟାଙ୍କକୁ ଯିବ । ଆଜିକାଲି ରାସ୍ତାଘାଟର ଯାହା ଅବସ୍ଥା କଟକରେ । ଚୋରି, ଛଡ଼ାଛଡ଼ି ଜୋରରେ ଚାଲିଛି । ତାକୁ ଭୀଷଣ ଭୟ ଲାଗିଲା । ମନର କଥା ସେ କିନ୍ତୁ କହିପାରିଲାନି । ତଳକୁ ମୁହଁ ପୋତିଦେଲା । ପ୍ରତିବାଦ ସେ କରିପାରେନି । ପ୍ରତିବାଦ କରିପାରିଥିଲେ ବୋଧହୁଏ ଭଲହୋଇଥାନ୍ତା । ଯାଉ ତା'ର ଚାକିରି । ହେଲେ ସେହି ମୁହୂର୍ତ୍ତରେ ନିମ୍ନ ମଧ୍ୟବିତ୍ତର ଭୂତଟିଏ ତା ପିଠିରେ ବସିପଡ଼ିଲା । ଚାକିରି ଛାଡ଼ିଦେଲେ କେମିତି ଚଳିବୁ । ଯାହି ହଜାରଟା ଟଙ୍କା ପାଉଛୁ ସେତିକିରେ ମୁଣ୍ଡ ଉପରକୁ କରି ଚଳୁଛୁ । ଛାଡ଼ିଦେଲେ ତୋତେ କିଏ ପୋଷିବ । ଛି...ଛା କରିବେ । ଘରେ ବସେଇ ଉଠେଇ ଦେବେନି । ବଡ଼ ଭାଇଙ୍କୁ ସିନା କିଛି କୁହନ୍ତି ନାହିଁ । ହେଲେ ତୋତେ କିଏ ଛାଡ଼ିବ ? ତୁ ତ ବେକାର । ଅନ୍ୟମାନଙ୍କ ପରି ପଇସା ରୋଜଗାର କରିପାରିବାର ଉପାୟ ତୋର ନାହିଁ । ଦୋକାନ ଖଣ୍ଡେ କରିବାପାଇଁ ତୁ କି ହୀନସ୍ତା ନ ହେଉଛୁ । ଭଉଣୀ କହିଲା ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାରେ ଫର୍ମ ପକାଇବାକୁ । ତୁ କେତେଥର ଦୌଡ଼ିଲୁ ଡି.ଆଇ.ସି କୁ । ସବୁଥିରେ ଲାଞ୍ଚ । ତୋ'ର ହଜାରଟଙ୍କା ସେଥିରେ ଗଲା । ବ୍ୟାଙ୍କଯାଏ ଫର୍ମ ଯାଉଯାଉ ଡେ଼ରି । ସେଠି ମ୍ୟାନେଜର ଚିହ୍ନା । ଭଉଣୀର ସହକର୍ମୀ । ଭଲଭାବେ ଜାଣନ୍ତି ଗ୍ୟାରେଣ୍ଟର ଦରକାର ନାହିଁ କି ସିକ୍ୟୁରିଟ ଦେବା ଦରକାର ନାହିଁ । କାନପାଖରେ ଫୁସ୍‌ଫୁସ୍ କରି କହିଲା-କ'ଣ ଭଉଣୀ ଗ୍ୟାରେଣ୍ଟର ହେବେ ? ସେଉଠୁ ସେ ବୁଝିଗଲା ତା'ର ଉଦ୍ଦେଶ୍ୟ । ବେକାର ସାତଦିନକାଳ ଦୌଡ଼ି ଡ଼ି.ଆଇ.ସିରେ ସେ ଟ୍ରେନିଂ ନେଇଥିଲା । ସବୁ ପାଣିରେ ପଡ଼ିଲା । ତା'ର ଉଜ୍ଜ୍ୱଳି ଉଠିଥିବା ଆଶା ସେଦିନ ମଉଳି ଯାଇଥିଲା । ସେ ଭଲକରି ଜାଣେ ଭଉଣୀ ଗ୍ୟାରେଣ୍ଟର ହେବାକୁ ମନା କରିଦେବେ । ଜୀବନର ବୋଝ ବୁହାଇ

ବୁହାଇ ସେ ମୁହ୍ୟମାନ । ବିରକ୍ତିର ସୀମା ତାଙ୍କର ନାହିଁ । କଥାଏ କଥାଏ ଗାଳି ଦେବେ । ତା'ର ବି ଭରସା ନାହିଁ ଲୋନଟା ଆଣିଲେ କେମିତି ଚାଲିବ ଦୋକାନ । ଘରଭଡ଼ା ଦେବ ପୁଣି ତା' ଲାଭଂାଶରୁ । ତା'ପରେ ବ୍ୟାଙ୍କର ଲୋନ ପରିଶୋଧ କରିବା ତା ପାଇଁ ବିରାଟ ବୋଝ ହୋଇଯିବ । ନଦେଲେ ଭଉଣୀଙ୍କ ଦରମାରୁ ଶେଷକୁ କଟିବ । ଏଇ କଥା ଭାବି ସେ ଭୟଭୀତ ହୋଇ ଯାଇଥିଲା । ମ୍ୟାନେଜରର ଜଟିଳ ହସକୁ ଚାହିଁ ଛାତି ଭିତରଟା ହା:.ହା..କାର କରି ଉଠିଲା । ନିଃଶବ୍ଦରେ ସେ ବ୍ୟାଙ୍କ୍‌ରୁ ପ୍ରସ୍ଥାନ କରିଥିଲା । ସେସବୁ ଆଉ ଭାବି ନାହିଁ । ଏବେ ଏଇ ଚାକିରିରେ ଝାମେଲା ପୂରେଇଲେ ଗୋଡ଼ ତଳର ସାମାନ୍ୟ ମାଟି ମଧ୍ୟ ସେ ହରେଇବ । ଅହରହ ଘର ଲୋକଙ୍କର ଖିଟ୍‌ଖିଟ୍ ହେବାକୁ ମଧ୍ୟ ସେ ସହି ପାରିବନି ।

ବାଧ୍ୟ ହୋଇ ସେ ବ୍ୟାଙ୍କକୁ ଗଲା ଏବଂ କାମସାରି ଫେରିଆସିଲା ।

ପୂଜା ଶେଷ ହୋଇଗଲାଣି । ତଥାପି ବୋନସ୍ ମିଳି ନଥିଲା । ଯାହାହେଉ ପ୍ରସାଦବାବୁ ହଜାରେ ଟଙ୍କା ବୋନସ୍ ଦିଏ । କିନ୍ତୁ ଏ ବର୍ଷ ଶୁଖିଲା ଗଲା ପୂଜାଟା । ବୋନସ୍‌କୁ ସମସ୍ତେ ଚାହିଁ ରହିଲେ । ଅଥଚ ମାଗିଲେ ନାହିଁ । ପ୍ରସାଦବାବୁ କୁହନ୍ତି ଦୋକାନ ଆଉ ଭଲ ଚାଲୁନି । ସମୟ ବଦଳୁଛି । ବ୍ୟବସାୟ କମୁଛି । କେଉଁଠି ଆସିବ ବୋନସ ଦେବାକୁ ।

ସୌମ୍ୟ ପୁନଶ୍ଚ ତଳକୁ ମୁହଁପୋତି କାମ କରିବାରେ ମନଦେଲା । ଦୁଇଟାବେଳେ ସେ ଉଠିବ ଖାଇବା ପାଇଁ ଯିବାକୁ । ବେଳେବେଳେ ଅଢ଼େଇଟା ହୁଏ । ପୁଣି ଚାରିଟାବେଳକୁ ଆସିବ । ରାତି ଦଶଟାଯାଏ ଖଟିବ ଏଠି ।

ସେ ଏତେ ପରିଶ୍ରମ କରିପାରେ କେବଳ ଏଇ ଦୋକାନର ବନ୍ଧନ ଜନିତ । ଚାକିରିଟାଏ କରିଛି ବୋଲି । ନହେଲେ ନିଜର ମାନସିକ ଶକ୍ତି କାହିଁ ଏ ନିଗଡ଼ କାଟି ବାହାରିଯିବ ସ୍ୱାଧୀନହୋଇ ନିଜର ପରିଚୟ ନେଇ ରହିବାକୁ ? ମାଲିକର ସମ୍ମାନନେଇ ବଂଚିବାକୁ ? ତା ହୁଏ ନାହିଁ । ଜୀବନ ତା'ର ଚାଲିଥାଏ ଏମିତି ସହଜ, ସାବଲୀଳ ଗତିରେ ।



# (୩)

ସାଇକେଲ ଚଲେଇ ଆଦିତ୍ୟବାବୁ ଫହଚିଲେ ଦୋଳମୁଣ୍ଡାଇରେ ଅବସ୍ଥିତ ସୂରଯ ବାଗ୍ରୀର ଅଫିସରେ । ଗୋଟାଏ କଡ଼କୁ ସାଇକେଲ୍ ଆଉଜାଇ ସ୍ତବ୍ଧ ହୋଇ ବସି ପଡ଼ିଲେ ତାଙ୍କ ପାଇଁ ଉଦ୍ଦିଷ୍ଟ ଗଦି ଉପରେ । ଚଟାଣ ଉପରେ ବିଛା ହୋଇଛି ଚାରିଇଞ୍ଚ୍ ବହଳର ଗଦି । ତା'ରି ଉପରେ ବସି ସେ କାମ କରନ୍ତି ।

ଶରତ ଯାଇ ହେମନ୍ତର ପଦପାତ ଶୁଣାଗଲାଣି ପୃଥିବୀ ଉପରେ । ତଥାପି ତାଙ୍କ ଦେହରୁ ଝାଳବୋହି ଯାଉଛି । ବୟସ ହେଲାଣି । ଏଇମାତ୍ର ବାଟ ତେଲଙ୍ଗାବଜାରରୁ ଦୋଳମୁଣ୍ଡାଇ ଯାଏ ସାଇକ୍ଲିଂ କରି ଆସିବାକୁ ଲାଗୁଛି ଖୁବ୍ ଲମ୍ବା ପଥ । ଯେମିତି କି ତା'ର ଶେଷ ନାହିଁ । କେଜାଣି ଏମିତି କାହିଁକି ମନେହୁଏ ତାଙ୍କୁ । ଦୂରକୁ ଚାହିଁ ରୁହନ୍ତି । ଭାବନ୍ତି ଏତେଗୁଡ଼ାଏ ରାସ୍ତା ଯିବି ସାଇକେଲ୍ କରି । ଗୋଟାଏ ହତାଶ ଭାବ ଆସିଯାଏ ତାଙ୍କର ସମଗ୍ର ସତ୍ତା ଭିଜାଇ । ଇତଃସ୍ତତଃ ଚାହିଁ ପୁନଶ୍ଚ ପାଦ ରଖନ୍ତି ପେଡ଼ାଲ ଉପରେ । ଆସ୍ତେ ଆସ୍ତେ ଆସନ୍ତି । ଲାଗେ ଥକି ଯାଉଥିବା ମଣିଷଟିଏ ସେ । ତଥାପି ପୁର୍ନଃ ବିନ୍ୟାସ ତାଙ୍କର ଆରମ୍ଭ ହୋଇଛି । ଯୁଆନ ବୟସପରି ତାଙ୍କୁ ଖଟିବାକୁ ପଡ଼ିବ । ଆଉ ଏ ସବୁ ଚିନ୍ତା ଭାବନା ନିରର୍ଥକ ।

ମଝିଆଁ ପୁଅ ସୁଜୟ ଏ ଚାକିରି ଖଣ୍ଡକ କେଉଁଠୁ ଜୁଟେଇଛି । କହିଥିଲା କିଛି ପରିଶ୍ରମ ନାହିଁ । ଯିବ-ଗଦି ଉପରେ ବସିବ । ମନହେଲେ ଶୋଇବ, ପୁଣି ଚାରିଟା ବେଳକୁ ଆସିବ । ପ୍ରକୃତରେ ସ୍ଥୂଳ ଦୃଷ୍ଟିରୁ ବିଚାରକଲେ ସେଇଆ ନୁହେଁ କି ! କିନ୍ତୁ ପଚିଶବର୍ଷର ଯୁବକର ଅନୁଭବରେ ଏଇ ସରଳ ପ୍ରାତ୍ୟାହିକ କର୍ମଟି ନିଃଶ୍ଚିତଭାବେ ସହଜ, ହେଲେ କେଜାଣି କାହିଁକି ତାଙ୍କପାଇଁ ବଡ଼ ଗୁରୁଭାର ପରି ଅନୁଭବ ହେଉଛି । ସତୁରୀବର୍ଷର ଅବସରପ୍ରାପ୍ତ ସରକାରୀ କର୍ମଚାରୀ ଜଣେ ତେଷଠି ବର୍ଷର ମାରୱାଡ଼ି ପାଖରେ ଘରୋଇଭାବରେ କାମ କରିବାର ଅନୁଭବ ଭିତରେ କେତେ ନ୍ୟୁନ ପଣିଆଟିଏ ରହିଛି ତା' କି ସେ ବୁଝିପାରିବ ! ତଥାପି ଯିବାକୁ ହେବ ପଥ ବହୁଦୂର । ସାମ୍ନା କରିବାକୁ ପଡ଼ିବ ଜୀବନ ସଂଗ୍ରାମ । କାହିଁକି ନାଁ ଆଜି ସେ ଜୀବନ ସମ୍ମୁଖରେ ଦାୟବଦ୍ଧ । ତାଙ୍କର ଏ ବୟସରେ ମଧ୍ୟ ପିଲାମାନେ ମଣିଷହୋଇ ପାରିନାହାନ୍ତି । ସେମାନଙ୍କର

ଶିକ୍ଷା, ବିବାହ ଅନେକ କିଛି ଦାୟିତ୍ୱ ସାମନାରେ । ଆଉ ବଡ଼ ପୁଅର ଘର ସଂସାର, ବେକାରୀ ଜୀବନର ଦାୟିତ୍ୱ ତାଙ୍କର ଦାୟବଦ୍ଧତାକୁ ଆହୁରି ବଢ଼ାଇ ଦେଇଛି ।

ସେ ମନେମନେ ହସିଲେ । ବଡ଼ପୁଅ ହୋଇ ସେ ଭାବେ ନାହିଁ ତା'ର ଦାୟିତ୍ୱ । ତା'ର କର୍ତ୍ତବ୍ୟ । ତା'ର ଗୋଟା ସଂସାରର ଚାପ ଚାପିଦେଇପାରେ ତାଙ୍କ ଉପରେ । ଦିନେହେଲେ କଥାହୁଏ ନାହିଁ କେମିତି ଚଳୁଛ ବାପା । ଅଥଚ ସେ ? ଏ ସବୁ କରିବାକୁ ବାଧ । କାହାକୁ କହିବେ ? କିଏ ଶୁଣିବ ତାଙ୍କର ଏଇ ଦୈନତା । ହା...ହା...କାର, ପୁଅକୁ କହିଲେ, ସେ ତ ପଳାତକ । ଜୀବନରେ ପଇସା ରୋଜଗାର କରିପାରିବୁନିବୋଲି ମୁକ୍ତ ମନରେ ବାପ ସାଙ୍ଗରେ କଥାହେବାକୁ ବାଁରେଇ ଚାଲିଯିବୁ ! ଘର କେମିତି ଚଳିବ ତା' ମଧ୍ୟ ଶୁଣିବୁନି । ଏ କି ଦାୟିତ୍ୱକୁ ଫାଙ୍କି ବୁଲିବା କଥା । ବୋହୂଟା ବି କରିବ କ'ଣ ? ବେକାରୀର ହାତ ଧରିଛି । ଯିଏ ତାକୁ ବାହା ଦେଇଛି ସେ ହିଁ ବୁଝୁ ତାର ଚଳିବା କଥା । ସେ ବେଳେବେଳେ ଯୁକ୍ତି ବାଢ଼େ । ଯୋଗ୍ୟମନ୍ତ ପୁଅ ତୁମର ଯେଉଁ ରୋଜଗାର କରୁଛନ୍ତି ଜାଣିନ ଯେ ପୁଣି କଥା କହୁଛ !

ଗତକାଲି ସେ ଗାଁରୁ ପହଞ୍ଚିଥିଲା । ପୁଅ ଟ୍ରେଜେରୀରୁ ପେନ୍‌ସନ୍ ଉଠାଇ ଆସିଲାବେଳକୁ ଚାରି ତାରିଖ ହୁଏ । ବଡ଼ ଡ଼େରି ଏସବୁ ଆଦିତ୍ୟଙ୍କ ପାଇଁ । ଏଥରକ ବୋହୂକୁ ପଠାଇଦେଇଛି । ପୁଣି ଚାରି ଶହ ଟଙ୍କା କମ୍ । ସେ ଶୂନ୍ୟ ଦୃଷ୍ଟିରେ ଶାନ୍ତିର ମୁହଁକୁ ଚାହିଁଥିଲେ । ଶାନ୍ତି ଦ୍ୱିରୁକ୍ତି ଭରା ମୁହଁଟିଏ କରି ଉତ୍ତର ଦେଇଥିଲା-ତୁମ ପୁଅ ଯାହା ପଠାଇଲେ, ମୁଁ କ'ଣ କରିବି ?

ସେଦିନ ଅସହାୟ ଅବସ୍ଥାରେ ସେହି ଟଙ୍କାତକ ସେ ତା' ହାତରୁ ନେଇ ନିରୁତ୍ତର ରହିଲେ । ହେଲେ ଆଖି ତାଙ୍କର ଛୋଟଛୋଟ ହୋଇଯାଇଥିଲା । ଗୋଟାଏ ଚପା ଯନ୍ତ୍ରଣା ଦୀର୍ଘଶ୍ୱାସ ହୋଇ ଉତ୍ତୁରି ଆସିଥିଲା । କି ଲଜ୍ଜା ଏ ! କାହାକୁ କହିହେବ ?

ସ୍ଥିର ଭାବରେ ସେ କିଛି କହିବାକୁ ଚାହୁଁଥିଲେ । ତା' ପୂର୍ବରୁ ଶାନ୍ତିଙ୍କର ବୁଝାଇବାର ଭଂଗୀ, ସ୍ୱଷ୍ଟ ଉକ୍ତି ତାଙ୍କ କାନକୁ ଭୂକଂପ ପରି ଦୋହଲାଇ ଦେଇଥିଲା । ''ଛୁଆ ଦୁଇଟାମୋର ଗାଁରେ କେମିତି ଚଳିବେ । ମୋର ଏ ଦୟନୀୟ ଜୀବନ କାହା ପାଇଁ ? ତୁମ ପୁଅର ଅଯୋଗ୍ୟ ପଣିଆ ତ ଜାଣିଛ । ମୁଁ କ'ଣ ତୁମକୁ ନାହିବାକୁ ନାଁ ପିଂଧିବାକୁ ମାଗୁଛି ? ଘରେ ଗଣ୍ଡାଏ ଖାଇବାକୁ ଭାତ, ଡାଲି, ଆଳୁସିଝା ଟାଏ ତ ଦରକାର । ତୁମ ପୁଅ ତ ଘରେ ରହୁନାହାନ୍ତି କି କହିଲେ କିଛି ଶୁଣୁ ନାହାନ୍ତି । ମୁଁ ମାଇପିଟା କ'ଣ କରିବି ? ସକାଳୁ ଉଠି ଚୁଡ଼ା ଗଣ୍ଡାଏ ପକାଇ ଦେଇ ସେ ବାହାରିଗଲେ କୁଆଡ଼େ । ଆସିବେ ଖାଇବା ବେଳକୁ । ପୁଣି କୁଆଡ଼େ ଯିବେ ଯେ ରାତି ଏଗାରଟାକୁ ଆସିବେ । ମୋର ଆଉ ଭଲ ମନ୍ଦ ନାହିଁ ।''

ଭିତରେ ଭିତରେ ରକ୍ତଚାଉଳ ଚୋବାଉଥିଲେ ଆଦିତ୍ୟ । ହେଲେ ବାଣୀବ୍ରତାଙ୍କର କଠୋର ଦୃଷ୍ଟିରେ ସେ ଦବି ଯାଇଥିଲେ । ଘର ଭିତରେ ଅସନ୍ତୋଷର ଝଡ଼ଟିଏ ଆସିବା ଆଗରୁ ସେ ପାଚେରୀ ପରି ଠିଆହୋଇ ରହୁଥିଲେ । ଆଉ ତ କିଏ ନୁହେଁ । ବୋହୂଟା । ତାକୁ କିଛି କହିବା ନିରର୍ଥକ । ତୁମ ପୁଅକୁ ଆଗେ ସଜାଡ଼ । ଆଦିତ୍ୟ ଅଗତ୍ୟା କ୍ଷୁବ୍ଧ ଅଭିମାନରେ ସେମେଚି ଯାଇଥିଲେ । ଖଟ ଉପରେ ଗଡ଼ି ପଡ଼ିଥିଲେ ମନର ଭାରକୁ ବହନ କର ନପାରି । ଘଣ୍ଟାଏ ଶୋଇ ପଡ଼ିଲେ ତାଙ୍କର ଟେନ୍‌ସନ୍ ସୁଧୁରିଯିବ । ତା'ପରେ ସେ ନର୍ମାଲ ହୋଇଯିବେ । ରାସ୍ତା ଉପରକୁ ଯାଇ ସାହୁ ଦୋକାନରେ ବସି ବିଡ଼ି ଟାଣିବେ । ଗପ୍ପ କରିବେ । ଦୋକାନ ସଉଦା ଯାହା ଦରକାର ଆଣିବେ ।

କେତେ ସ୍ୱପ୍ନ ଥିଲା ବଡ଼ ପୁଅଟି ଭିତର । ବାପ ପଛକୁ ଲାଗିଯିବ । ଅନ୍ୟ ପିଲା ତିନୋଟିଙ୍କୁ ମଣିଷ କରିବ । ଅବସର ପରେ ସେ ଟିକିଏ ହାଲକା ହୋଇଯିବେ । ବଡ଼ ଚାକିରିଟିଏ ନ ପାଉ ଛୋଟିଆ କାଟିଆ ଚାକିରିଟିଏ ତ କରିପାରିଥାନ୍ତା ! ପିଲାଦିନୁ ପାଠରେ ଟିକିଏ କମଜୁର ଥିଲା ହଁ, ହେଲେ ବି:ଏସ:ସି ପାଶ କଲାପରେ ତ ଗାଁ ସ୍କୁଲର ମାଷ୍ଟର ଚାକିରିଟାଏ ପାଇ ପାରିଥାନ୍ତା ! ମନ୍ତ୍ରୀଫନ୍ତ୍ରୀଙ୍କୁ ଧରି କେଉଁଠୁ କିରାଣୀଟାଏ ହୋଇ ପାରିଥାନ୍ତା ! କିଛି ବୁଝିଲାନି ସେ । ଅହରହ ଫଝାଏ ସାଂଗଙ୍କ ମେଳରେ ବୁଲିବା ହେଲା । କି ରାଜନୀତିରେ ମାତିଲା କେଜାଣି ପଢ଼ାପଢ଼ି ଢିଲା । କଟକ ସହରରେ ଏ ଗୋଟାଏ ଦୋଷ । ଗୁଲିଖଟି କରି ରାତିରେ ଫେରିବା । ସତେ କି ସଂକ୍ରାମକ ରୋଗ । ବାପ କ'ଣ କିରାଣୀ ଚାକିରିକରି ତୁମକୁ କଟକ ସହରରେ ରଖି ପାଠ ଶାଠ ପଢ଼ାଇଥିଲା ରାଜନୀତି କରି ବୁଲିବାକୁ ! କଲେଜରେ ଯାଇ ଛାତ୍ରନେତା ହେବାକୁ ? ରାତି ଅଧରେ ବୁଲି ବୁଲି ଘରକୁ ଫେରିବାକୁ ?

ରାଜନୀତିମାନେ ହିଁ ଗୁଣ୍ଡାହୁଣ୍ଡାଙ୍କ ରାଜ । କାହା ସଂଗରେପଡ଼ି ମଦଫଦ ଖାଇବାକୁ ନେଇ ବଡ଼ ଦୁଃଶ୍ଚିନ୍ତା ତାଙ୍କର । ଯେଉଁ ଦିନ କଲେଜ ଫଙ୍କସନ୍‌ରେ କଂଗ୍ରେସ, ଜନତା ହୋଇ ଦୁଇ ଦଳିଆ ଛାତ୍ରନେତା ଛୁରି ଚଲାଚଲି ହୋଇଗଲେ ସେଦିନ ସେ ଖୁବ୍ ଡରିଯାଇଥିଲେ । କ'ଣ ଦରକାର ଥିଲା ମଧ୍ୟବିତ୍ତ ଶ୍ରେଣୀର ପିଲା ହୋଇ ଏସବୁ ସଉକିରେ ମାତିବା ? ଯଦି କିଛି ହୋଇଯାଇଥାନ୍ତା ?

ଜୀବନ କେତେ ମୂଲ୍ୟବାନ । ପିଲା ଦିନେ ବସନ୍ତ ହୋଇଥିଲା । ମୁହଁଯାକ ଦାଗ । କେତେ ପଇସା ଉଡ଼ିଗଲା । ସୁନାଗହଣା ସବୁ ବିକ୍ରିହେଲା ବାଣୀବ୍ରତାଙ୍କର । ପୁଅ କେମିତି ବଂଚିବ ସେଇ ଚିନ୍ତାରେ ଜୀର୍ଣ୍ଣ ହୋଇଗଲେ ସେ । ଈଶ୍ୱର କୃପାକଲେ। ପୁଅ ନୂଆ ଜୀବନ ଅବା ପାଇଲା । ତା' ଜୀବନ ଭଗବାନଙ୍କ ଦୟାର ଜୀବନ । ସେ ବଂଚି ରହୁ । କାହିଁକି ଏ ଗୁଣ୍ଡାହୁଣ୍ଡାଙ୍କ ସାଂଗରେ ଅଜୟ ପଡ଼ିଲା ? କିଏ ଦୁର୍ବୁଦ୍ଧି ଦେଲା ?

ଏଇ କେତେଦିନ ତଳେ ଗାଁକୁ ଫେରୁଥିବା ବେଳେ ବାଲିକୁଦା ବଜାର ଉପରେ ଚାରିଜଣ ତାକୁ ଅଟକାଇ ଥିଲେ । ସେମାନେ ମଦପିଇ ଡାଉନ୍ ଥିଲେ । ତାକୁ ଅଟକାଇ ପାର୍ଟି ବିରୁଦ୍ଧରେ କିଛି କହିଲେ । ଏମ:ଏଲ:ଏ ସାଂଗରେ କାହିଁକି ବୁଲୁଛି ପଚାରିଲେ । ସାଂଗ ନ ଛାଡ଼ିଲେ ଦେଖିନେବେ କହିଛନ୍ତି । ସେମାନଙ୍କ ପାଖରେ ଛୁରିଥିଲା କି ନାହିଁ ତା' ଅଜୟ କହିନାହିଁ । ହେଲେ ତାକୁ ଗାଡ଼ିରେ ଜବରଦସ୍ତ ବସେଇ ନେଇଯାଇଥିଲେ ଆଉ କିଛି ଧମକାଧମକି କରିଥିଲେ । ସତୁରୀ ବର୍ଷ ବୟସରେ ବାପ ହୋଇ ଏସବୁ ଶୁଣିଲାପରେ ବ୍ଲଡପ୍ରେସର ତାଙ୍କର ବଢ଼ିଯାଇଥିଲା କି କ'ଣ ? ମୁଣ୍ଡ ଘୂରିବା ପରି ସେ କ୍ଷଣକାଳ ଅନୁଭବ କରିଥିଲେ ।

ଯାହା ହେଉ ତୁ ତ ବି:ଏସ:ସି ପାଶ କରିଥିଲୁ । ବାପ ପଛରେ ପୁଅ ଲାଗିଯାଏ । ସେଥିପାଇଁ ପୁଅଟିଏ ଆଗ ଜନ୍ମ ହେଲେ ମଣିଷ ଖୁସୀ ହୋଇଥାଏ । ମନରେ ଦମ୍ଭ ଆସେ । ହଁ...ଗୋଟାଏ ଖୁଣ୍ଟ । ତାକୁ ଆଉଜି ଠିଆ ହୋଇଯିବେ ଅନ୍ୟମାନେ, ହେଲେ ସବୁ ନିଃଷ୍ଫଳ ଏଠି । ତାକୁ କିଛି ବି ପଚାରି ହୁଏନି । ଅବ୍ୟକ୍ତ ତା'ର ଅସ୍ପଷ୍ଟ ଜୀବନ । କାହାରି ଆଖିକୁ ଦେଖାଯାଏ ନାହିଁ ପରଳ ପଡ଼ିଥିବା ରୋଗୀପରି । ସବୁବେଳେ ନୀରବ ହୋଇ ରହିବା ତା'ର ଅଭ୍ୟାସ । ସେଥିପାଇଁ ଅଭେଦ୍ୟ, ଅସ୍ପଷ୍ଟ । କ'ଣ ପଚାରିଲେ ବିରକ୍ତି ଭାବ । ଘର ଛାଡ଼ି ତ ବାହାରେ ଅଧିକା ସମୟ ଗଲା । କେହି ବୁଝିପାରନ୍ତି ନାହିଁ ତାକୁ ।

ଆଦିତ୍ୟ ଚାହିଁଲେ ବାଗ୍ରୀକୁ । ତାଙ୍କୁ ଦେଖି ସେ ସାମାନ୍ୟ କବାଟ ଆଉଜାଇ ଦେଇଛନ୍ତି । ଦାଦାଜୀ କହି ଖୁବ୍ ସମ୍ମାନ ଦିଅନ୍ତି । ତଥାପି ମାଲିକ ସେ । ବୟସରେ ଛୋଟ ହେଲେ ବି ସେ କୌଣସି ଚାକିରିକୁ ଅସମ୍ମାନ ଦୃଷ୍ଟିରେ ଭାବନ୍ତି ନାହିଁ । କାମରେ ଶୃଂଖଳିତ । ଠିକ୍ ସମୟରେ ଅଫିସରେ ପଂହଚନ୍ତି । ନିଜ ଡିର୍ପାଟମେଣ୍ଟରେ ମଧ୍ୟ ତାଙ୍କର ଅଡିଟର ଭାବରେ ଖ୍ୟାତି ଥିଲା । ପରିଷ୍କାର ମଥା । ଆକାଉଣ୍ଟାନ୍‌ସିରେ ପ୍ରଥମ ପୁରସ୍କାର ପାଇଥିଲେ ଚିଫ୍ ମିନିଷ୍ଟରଙ୍କ ଠାରୁ । ଅକ୍ଷର ଗୁଡ଼ିକ ମୁକ୍ତାପରି ଝଲସୁଥାଏ । ହାତରେ ହିସାବ କଲେ ବି ଧାଡ଼ିଗୁଡ଼ିକ ସିଧା । କଟାକଟି କେଉଁଠି ନାହିଁ । ପରିଛନ୍ନତା ସ୍ପଷ୍ଟ, ତା' ଦେଖିଲେ ଲାଗେ । ସେଥିପାଇଁ ବଡ଼ ବଡ଼ ଅଫିସର ତାଙ୍କୁ ଆଦର କରିଥାନ୍ତି । ଆଉ ଏଇ ବ୍ୟବସାୟର ହିସାବକିତାବ ତ ଖୁବ୍ ସାମାନ୍ୟ ଏଠି । ସୂରଯ ବାଗ୍ରୀ କମିଶନ ଏଜେଣ୍ଟ । କେତେ ବା ହିସାବ ହେବ । ବରଂ କାମେକା ଲୋକ ପାଇଁ ଏଇଟା ସାମାନ୍ୟ ବୋଲି ଆଦିତ୍ୟ ଅନୁଭବ କଲେ ।

ବାଗ୍ରି କିଛି ବୁଝିପାରେ ନାହିଁ ତାଙ୍କ ବୁକ୍ କିପିଂ ମେଥଡ୍ । ସେ ପ୍ରତ୍ୟେକଟି ବିଭାଗକୁ, ପ୍ରତ୍ୟେକଟି ଡିଲରଙ୍କ ଅଲଗା ରେକର୍ଡ଼ କରିଥାନ୍ତି । ଭାଉଚର ଆଗରୁ ପାଶ୍‌କରୁ

ନଥିଲା କାମ କରୁଥିବା ଲୋକଟି । ଗୋଟାଏ ଖାତାରେ ରଫ୍ କଲାପରି ହିସାବ ଲେଖେ, କିଛି ପରିଷ୍କାର ବୁଝି ହୁଏ ନାହିଁ । ବାଗ୍ରିର ଜର୍ଦ୍ଦା ବ୍ୟବସାୟ । ଜର୍ଦ୍ଦାର ମାର୍କେଟ ଏଠି ହଟ୍‌କେକ୍‌ପରି । ବସି ବସି ପଇସା ପାଇବା କଥା । ତଥାପି ହିସାବ ଠିକ୍‌ଠାକ୍ ରଖିବାକୁ ପଡ଼ିବ । ସେଲସ୍ ଟ୍ୟାକ୍ସ, ଇନ୍‌କମ୍ ଟ୍ୟାକ୍ସବାଲାଙ୍କୁ ଠିକ୍‌ଠାକ୍ ଖାତା ଦେଖେଇବାକୁ ପଡ଼ିବ । ଯଦିଓ ତାଙ୍କ କାମ ଉପରେ ବାଗ୍ରୀ ବୁଢ଼ାର ବିଶ୍ୱାସ ଥାଏ ତଥାପି କାଳେ ଇନ୍‌କମ୍ ବେଶୀ ଦେଖେଇ ଦେବେ, ଓକିଲକୁ ଡାକି, ତା'ର ପରାମର୍ଶ ନେଇ ରିଟର୍ଣ୍ଣ ଫାଇଲ କରେ । ପ୍ରକୃତ ପକ୍ଷରେ ବାଗ୍ରୀର ରୋଜଗାର ବର୍ଷକୁ ବାର ଲକ୍ଷ । ଦେଖାଏ ଲକ୍ଷେ କୋଡ଼ିଏ ହଜାର । ଆଦିତ୍ୟ ଆଚମ୍ଭିତ ହୁଅନ୍ତି ଏସବୁ ଫାଙ୍କି ଫୋକରରେ । କଳାକୁ ଧଳା କରି ପଇସା ରୋଜଗାର କରୁଥିବା ଏଇସବୁ ଲୋକଙ୍କୁ ସେ ଆଶ୍ଚର୍ଯ୍ୟହୋଇ ଦେଖନ୍ତି । ଅଥଚ ତାଙ୍କୁ ମିଳେ ନାହିଁ ଶହେ, ଦୁଇଶହ ଟଂକା ଅଧିକା ଟିକେ ମନଖୁସିରେ ଖର୍ଚ୍ଚ କରିବାକୁ । ପୁଣି ସେହି ସବୁ ଖର୍ଚ୍ଚର ମିଥ୍ୟାଚାରିତାକୁ ଦେଖାଇବାକୁ ଲାଂଚ ଦେବାକୁ ହୁଏ । କେତେ ସହଜରେ ଏ ପୃଥିବୀରେ କେତେ ଜଣ ରୋଜଗାର କରିପାରନ୍ତି ଅଜସ୍ର ପଇସା ବିନା କଷ୍ଟରେ । ପଇସାର କମାଲ ଦେଖାଇ ଏଇ ଅଳ୍ପ ପାଠ ପଢ଼ିଥିବା ବେପାରୀ କରଗତ କରି ରଖିଥାଏ ବେଶୀ ପାଠ ପଢ଼ିଥିବା, ସମାଜରେ ଏଲିଟି ମାସ୍ ବୋଲାଉଥିବା, ପ୍ରତିଷ୍ଠିତ ବ୍ୟକ୍ତି ଭାବରେ ନାମ ଅର୍ଜନ କରୁଥିବା ଏଇ ବଡ଼ବଡ଼ିଆ ଲୋକଙ୍କୁ । ବୁଢ଼ା ଚାଲାକ । ବୁଢ଼ା ବଡ଼ ଅନୁଭବୀ । ସେ ପାଠ ନପଢ଼ିଲେ କ'ଣ ହେଲା । ସେ ବୁଝି ପାରିଛି ଯେ ପାଠ ପଢ଼ିଥିବା ଏଇ ମଣିଷମାନଙ୍କୁ ପଇସାରେ ସେ କେମିତି ଅମଣିଷ କରିପାରିଛି । ଯେଉଁମାନଙ୍କର ନିଜ ସ୍ୱାର୍ଥ ଛଡ଼ା ଦେଶର ଉନ୍ନତି, ଦାୟବଦ୍ଧତା ନାଗରିକର ବୁଝନ୍ତି ନାହିଁ । ଇଣ୍ଟେଲେକ୍‌ଟକୁ ବିକ୍ରିକରି ଖା'ନ୍ତି । ଏମିତି ଶିକ୍ଷିତ ହେବାର କି ମୂଲ୍ୟ ଅଛି ? ବରଂ ତା'ର ପାଠପଢ଼ା ଯଦି ନହେଲା ନାହିଁ । ଏକଥା ସେ ଆଦିତ୍ୟଙ୍କୁ କହିଛି । କହିଛି ମଧ୍ୟ ନିଜ ଜୀବନ ସଂଗ୍ରାମର କାହାଣୀ । ଦୁଃଖରେ ନଇଁ ଯାଇଛି ତା'ର ଆଖି । କଣ୍ଠ ରୁଂଧି ହୋଇଯାଇଛି । ତା' ଆଦିତ୍ୟ ଜାଣନ୍ତି । ସେଥିପାଇଁ ସେ ସହାନୁଭୂତିଶୀଳ । ଯେତେ ପଇସାବାଲା ହେଲେ ବି ମଣିଷର ଦୁଃଖ ତା'ର ନିଜସ୍ୱ ଦୈନତାକୁ ବଢ଼ାଇ ଦେଇଥାଏ । ଅସହାୟତାକୁ ବଢ଼ାଇ ଦେଇଥାଏ । ତା' ନିଜ ଜୀବନରେ ତ ସ୍ପଷ୍ଟ । ବାଗ୍ରୀକୁ ସେ ବା କି ଉପଦେଶ ଦେବେ ? ସେ ଶୁଣନ୍ତି । କିନ୍ତୁ ବୟସ ଦୃଷ୍ଟିରୁ ନୀରବରେ ଠିଆ ହୋଇ ରହନ୍ତି । ଅଳ୍ପ କଥା ହୁଅନ୍ତି । ଯାହା ହେଲେ ତ ମାଲିକ । ଧନୀ ଲୋକ । ସେମାନଙ୍କ ସାଂଗରେ କଥା ହେବାକୁ ତାଙ୍କ ଭିତରେ ସଂକୋଚ ପଶିଆଟିଏ ରହିଥାଏ ।

ଆଦିତ୍ୟ ଆସିବା ଦିନଠାରୁ ଗୋଟା ବିଜିନେସ୍‌ର ଖାତାପତ୍ର ଆସ୍ତେ ଆସ୍ତେ ସୁଧାରି ନେଇଛନ୍ତି । ଠିକ୍ ଠାକ୍ କରି ପୋଷ୍ଟିଂ କରିବା, ପେମେଣ୍ଟର ହିସାବ ଠିକ୍

ରଖିବା, ସବୁ ଆପଣା ଢଂଗରେ ତିଆରି କରି ନେଇଛନ୍ତି । ତାଙ୍କ ପରେ ହୁଏତ କେହି ଆଜିକା ପିଲା ଆସିଲେ ଏତେ କଷ୍ଟ କରି ନପାରେ । ଯେମିତି ଆଗ ଲୋକଟି । ସେମାନେ କ୍ଷଣିକ ବେକାରୀ ଜୀବନରୁ ରକ୍ଷା ପାଇବା ପାଇଁ ଆସୁଛନ୍ତି । ନାଁ ତାଙ୍କର କାମରେ ମନଅଛି ? ପଇସା ପାଇଗଲେ ବିନା ପରିଶ୍ରମରେ ସେମାନଙ୍କ ଉଦ୍ଦେଶ୍ୟ ହାସଲ ହୋଇଯାଏ । ହେଲେ ଯେ ପର୍ଯ୍ୟନ୍ତ ସିଏ ଆସିବେ ସେଯାଏ ସବୁ ଠିକ୍‌ଠାକ୍ କରି ସଜାଡ଼ି ରଖିବେ ।

ବାଗ୍ରୀର ସହାନଭୂତିଶୀଳତା ତାଙ୍କୁ ଏଯାଏ ଏଠି ରଖିପାରିଲାଣି । ସମ୍ମାନଜନକ ନଥିଲେ ଏଇ ଦଶମାସ ସେ ଯେ କାଟିଦେଲେଣି, ତା' ହୋଇନଥାନ୍ତା । ଦାଦାଜୀ କହି ସବୁବେଳେ ବାଗ୍ରୀର ସମ୍ମାନ ଅଜାଡ଼ି ହୋଇପଡ଼େ । ବନାରସ ଯାଇଥିଲେ ସେ । କହିଥିଲେ ଆଦିତ୍ୟ ଝିଅପାଇଁ ଖଣ୍ଡିଏ ସିଲ୍‌କ ଶାଢ଼ୀ ଆଣିବାକୁ । ବାଗ୍ରୀର ଚଏସ୍ ଖୁବ୍ ଉନ୍ନତ ମାନର । ସିଧା କୋ-ପରେଟିଭ୍ ସୋସାଇଟିକୁ ଯାଇ ବୁଣାଳୀମାନଙ୍କଠାରୁ ଚଏସ୍‌କରି ଶାଢ଼ୀଟିଏ ଆଣିଥିଲେ । ଝିଅ ଚାକିରିଆ । ହେଲେ ଘରକରି ତା'ର ଭଲ ଶାଢ଼ୀଟିଏ ନଥାଏ । ସୁଯୋଗ ଯେତେବେଳେ ମିଳିଛି କାହିଁକି ବା ହାତଛଡ଼ା କରିବେ । ବାଗ୍ରୀ ସେଠୁ ଫୋନ୍‌କରି ରଂଗ କଥା ପଚାରିଥିଲେ । ହେଲେ ତାଙ୍କର ତ ଏସବୁ ଉପରେ ଧାରଣା କମ୍ । କହିଲେ- ଆପଣା ଯାହା ଚଏସ୍ କରିବେ । ସତରେ ଦେଖାଗଲା ବାଗ୍ରୀର ଅତ୍ୟାଧୁନିକ ଚଏସ୍ । ଝିଅର ମନକୁ ଖୁବ୍ ପାଇଥିଲା ଶାଢ଼ୀଟା । ଯଦିଓ ଦେଢ଼ ହଜାର ଶାଢ଼ୀର ଦାମ ପରିବର୍ତ୍ତେ ହଜାର ଟଂକା ଦେଇଥିଲା । ଆଉ ପାଞ୍ଚଶହ ସେ ଦରମା ପାଇ ଶୁଝିଥିଲେ । ଟାଣିଟୁଣି ହୋଇ ଜୀବନ ନିର୍ବାହ କରୁଥିବା ମଣିଷଙ୍କ ପକ୍ଷରେ ଏସବୁ ଦାମୀ ସଉକି କରିବା ଉଚିତ୍ ନଥିଲା । ହାତରୁ ପାଂଚଶହ ଟଂକା ଗଲାପରେ ଝିଅକୁ ମାଗିମାଗି ଆଉ ଦେଇନଥିଲା ।

ଆଦିତ୍ୟ ଗୋଟାଏ ଦିନର କାମ ଶେଷକରି ଦ୍ୱିପ୍ରହରରେ ଶୋଇବାକୁ ଭାବି ଗଦି ଉପରେ ଗଡ଼ି ପଡ଼ିଲେ । ତିନିଟା ବେଳକୁ ଉଠି କାମ କରିବେ । ଚାରିଟା ବେଳକୁ ବାହାରିବେ ଘରକୁ । ଶୋଇବାକୁ ଇଚ୍ଛାକଲେ ବି ଏଠି ନିଦ ହୁଏ ନାହିଁ । ତାଙ୍କର ଅଭ୍ୟାସ ଖରାବେଳେ ଶୋଇବା । ଏଠିକୁ ଆସିବାଦିନୁ ଶାନ୍ତିରେ ଶୋଇପାରନ୍ତି ନାହିଁ । ଘରେ ଗଭୀର ଭାବରେ ନିଦ ଆସିଯାଏ । ଦୁଇଘଣ୍ଟା ଶୋଇଲେ ତାଙ୍କୁ ଟିକେ ଫ୍ରେସ ଲାଗେ । ଉଠି ଝାଡ଼ା ଯା'ନ୍ତି । ଚା'ଟିକେ ପିଇ ପେପର ପଢ଼ନ୍ତି । ଏଠି ସେ ସବୁ ହୁଏ ନାହିଁ । ତାଙ୍କୁ ସଂକୋଚ ଲାଗେ । ବସି ବସି ପେପର ପଢ଼ିଲେ ବାଗ୍ରୀ ଯଦି ଦେଖେ, ବୟସ୍କ ମଣିଷ ଭାବରେ ଯାହା ସମ୍ମାନ ଦେଉଛି ତା' ଆଉ ରହିବନି । ଯେତେହେଲେ ବି

ମାଲିକ । ପ୍ରଭୁ ତାଙ୍କର । କେଉଁଠି ଟିକିଏ ଖଟକା ଲାଗିଯିବ ସେହି ପେପର ପଢୁଥିବା ଦୃଶ୍ୟ ଦେଖିଲେ । ତା' ସେ ଅନୁଭବ କରନ୍ତି । ଏଠି ବୟସଟା ଗୋଟାଏ ବଡ଼ ପାଚେରୀ । କେହି ପଦେ କହିଦେଲେ ମର୍ଯ୍ୟାଦା ରହିବନି । ସେଥିପାଇଁ ତାଙ୍କର ଏତେ ସଂଭ୍ରମତା । ଚାକିରି ଯାହାହେଲେ ବି ଗୋଟାଏ ଦାସତ୍ୱ । ଗୋଟାଏ ବଂଧନ । ସେଠି ମନର ସ୍ୱାଧୀନତା ନେଇ ଉପଭୋଗ କରାଯାଏନି ମୁହୂର୍ତ୍ତମାନେ । ତେଣୁ ସେ ସଚେତନ । ମଝିଆଁ ପୁଅ ସୁଜୟ ସେ କଥା ବୁଝେନି । କୁହେ ସେ ତ ଭଲଲୋକ । କ'ଣ କହିବେ ମ ! ପଢୁନା କାହିଁକି ପେପର । ଅଳ୍ପ ବୟସର ପିଲା । ସେମାନଙ୍କର କାହାକୁ ଡର ନାଁ ଖାତିର ! ଆଜିକାଲିକାର ଟ୍ରେନଡ୍ ସେଇଟା । ଯାବୋଲି ତା' କଥା ସେ ଶୁଣିବେ । କାମ କରିବାକୁ ଆସି ଠକିବେ ମାଲିକକୁ । ପୁଣି ନିଜ ଉପରେ ଖରାପ ଧାରଣାଟିଏ ତିଆରି କରାଇବେ ଏ ବୟସରେ !

ଆଦିତ୍ୟ ବେଳା ଚାରିଟାଯାଏ ବସି ରୁହନ୍ତି । କାମସାରି ଠିଆ ହୁଅନ୍ତି ବାଗ୍ରୀର ଦରଜା ସମ୍ମୁଖରେ । ତାଙ୍କୁ କହି ଆସେ ନାହିଁ । ସେ ଅନୁମତି ନେଇ ବାହାରନ୍ତି ଘରକୁ । ଏଇ ଅନୁମତି ପାଇଁ ଠିଆହେବାର ମୁହୂର୍ତ୍ତମାନ ବଡ଼ ବେଦନାଦାୟକ । ବଡ଼ କରୁଣ ଲାଗେ ତାଙ୍କୁ । ଭଦ୍ରତାବୋଲି ଯାହାକୁ କହିହେବ, ତା' ପ୍ରକୃତରେ ଗୋଟାଏ ମାନସିକ ପୀଡ଼ନପରି ତାଙ୍କୁ ଲାଗେ । ତଥାପି ସେ ବାଧ୍ୟ । ସେହି ଘରର ଗଣ୍ଡି ଭିତରେ ଥିବାଯାଏ ସେ ଦାସ ।

ଚାରିଟାବେଳକୁ ସାଇକେଲ୍ ପେଲି ତେଲେଂଗାବଜାର ଆସିବାଯାଏ ହାଫେଇ ଯା'ନ୍ତି । ସେହି ମୁହୂର୍ତ୍ତମାନଙ୍କରେ ମନେହୁଏ ବାଣୀବ୍ରତାଙ୍କ ଆଗରେ ସେ ସହାନଭୂତିର ପାତ୍ରହୋଇ ଯାଇଛନ୍ତି । ଏକଥା ଭାବୁଭାବୁ ଦରଦର ଛୁଆଁରେ ଆଖିର ଲୁହରେ ଝାପ୍‌ସା ହୋଇଆସେ ରାସ୍ତାଘାଟ ।



# (୪)

ଘରେ ପଂହଚି ଆଦିତ୍ୟଟିକେ ହାଲକା ହୋଇଯାନ୍ତି । ଏତେବାଟ ସାଇକେଲ୍‌ରେ ଯିବା ଆସିବା କରିବାକୁ ଆଜିକାଲି ତାଙ୍କୁ ଭଲଲାଗେ ନାହିଁ । ହେଲେ ମୁହଁରେ କାହାକୁ କିଛି କୁହନ୍ତି ନାହିଁ । ଗାଁକୁ ଯାଇଥିଲେ । ସେଠି ବାମହାତ ଘୋଳା ବିଂଧା ହେଲା । ଡାକ୍ତରକୁ ଦେଖାଇଥିଲେ । ବାହାରିଲା ବ୍ଲଡପ୍ରେସର । ଡାକ୍ତର ଗାଳିଦେଲା । ଆଜି ଯାଏ କାହିଁକି ଚେକ୍‌ଅପ୍ ହୋଇନା କହି । ବୟସ ହେଲେ ମଣିଷ ଚେକ୍‌ଅପ୍‌ରେ ରହିବା କଥା । ହେଲେ ସେମିତି କିଛି ଅସୁବିଧା ସେ ଅନୁଭବ କରିନଥିଲେ । ତାଙ୍କୁ ନାଁ ସାମାନ୍ୟ ଜ୍ୱର, ଝାଡ଼ା ମଧ୍ୟ ହୋଇଛି କେବେ ? ସେ ସବୁବେଳେ ସୁସ୍ଥ । ସୁସ୍ଥ ଥାଉ ଥାଉ କାହିଁକି ଯାଇଥାନ୍ତେ ଡାକ୍ତର ପାଖକୁ ! ସେ ହସିହସି କହିଥିଲେ ଡାକ୍ତରଙ୍କୁ । ତାଙ୍କ ସିଗାରେଟ୍ ଖିଆଦେଖି ଡାକ୍ତରବାବୁ ମନା କରିଥିଲେ । କହିଥିଲେ ଯେତେକ ନିକୋଟିନ ହାର୍ଟକୁ ଦୁର୍ବଳ କରିଦେବ । ଶୀଘ୍ର ଛାଡ଼ିଦିଅ ଏସବୁ । ହେଲେ କେଉଁଠୁ ଛାଡ଼ିହେଉଛି । ଚାକିରିରେ ଥିଲେ । ସିଗାରେଟ୍ ଖାଉଥିଲେ । ଏବେ ରିଟାର୍ଡ୍ । ହେଇହେଇ ବିଡ଼ିକଳେ ଟାଣିବେ । ହେଲେ ଛାଡ଼ିବା ମୁସ୍କିଲ ।

ଡାକ୍ତରଟା ଯେଉଁ ଦିନ ବ୍ଲଡପ୍ରେସର ଅଛି କହିଥିଲା ହଁ... ସେଦିନ ସେ ଭୟ ପାଇଯାଇଥିଲେ । ନୀରବହୋଇ ଘଡ଼ିଏ ବସି ପଡ଼ିଥିଲେ । ତା' ବି ହୁଏ ମଣିଷର । ପ୍ରଥମେ ପ୍ରଥମେ ଜୀବନର ନିରାଟ ସତ୍ୟକୁ ସାମ୍ନାକରି ମଣିଷ ଭୟ ପାଇଯାଏ । ସେ ଭୟ କେବଳ ମୃତ୍ୟୁକୁ। ମୃତ୍ୟୁର ଭୟାବହତାକୁ । ଏ ଦେହର ମୋହ ମଣିଷର ଅନେକ । କେତେ ଜନ୍ମ-ଜନ୍ମାନ୍ତର ଧରି ଏଇ ମୋହ ମାୟାର ପ୍ରଲେପ ଲାଗିଥାଏ । ତାକୁ ଛାଡ଼ିବା କି ଏତେ ସହଜ ! ସେ ବିମର୍ଷ ହୋଇପଡ଼ିଥିଲେ । ଛାଡ଼ିଦେଇଥିଲେ ସିଗାରେଟ୍ ଖାଇବା । ଇ:ସି:ଜି କରିଥିଲେ । ପୂର୍ବ ଅପେକ୍ଷା ଉନ୍ନତି ହୋଇଥିଲା । ହେଲେ ପୁନଶ୍ଚ ଅମାନ୍ୟ ହୋଇପଡ଼ିଲେ ସେ । ଭୁଲିଗଲେ ଡାକ୍ତରର ଉପଦେଶ । ଯେଉଁ ସଂଯତ ଜୀବନଟିଏ ଜୀଇଁବେ ବୋଲି ପ୍ରତିଜ୍ଞାବଦ୍ଧ ହୋଇଥିଲେ ତା' ଭୁଲିଗଲେ ଆସ୍ତେ ଆସ୍ତେ । ଭୁଲିଗଲେ ମଧ୍ୟ ଜୀବନର ନିଷ୍ଠୁର ନିର୍ମମତା ମୃତ୍ୟୁର ଭୟକୁ । ସଂସାରର ମୋହ ପୁନଶ୍ଚ ହୋଇଉଠିଲା ବଡ଼ ଆକର୍ଷଣୀୟ । ଚମତ୍କାର ଏ ମୋହ । ସେ ସବୁ ନିଷ୍ଠୁର ବାସ୍ତବତାକୁ ଦୂରକୁ ଠେଲି ମଣିଷକୁ ଭୟମୁକ୍ତ/ଦ୍ୱିଧାମୁକ୍ତ କରିଦିଏ । ସେଥିପାଇଁ ସିନା ଏତେ ଆନନ୍ଦ ଦାୟକ ଏ ମୋହମାୟା । ନ ହେଲେ କେତେବଡ଼ ମାନସିକ ପୀଡ଼ନ ସେ ଭୋଗ ନ କରିଛନ୍ତି ।

କେତେ ମନସ୍ତାପ, ଭୟଙ୍କର ଗୋଟାଏ ଅନିଶ୍ଚିତ ଭବିଷ୍ୟତର କଳ୍ପନା ସେ ବସିବସି ନକରିଛନ୍ତି । ଆସିଗଲା ତା' ହେଲେ ସଂସାରର ଲୀଳା ଖେଳା ସାଂଗ ହେବାର ମୁହୂର୍ତ୍ତ । କେଉଁଦିନ ବୁଢ଼ା ହୋଇଗଲେ । ରୋଗ ନଥିବା ଶରୀରରେ ପ୍ରବେଶ କରିଗଲା ଏତେବଡ଼ ଡିଫେକ୍ଟ । ହୁଏତ ଏଇ ପ୍ରେସର ହାର୍ଟ ଆଡ଼କୁ ଟାଣିବ । ତା'ପରେ ... ତା'ପରେ କ'ଣ ହେବ ? ଆଉ ଭାବିପାରନ୍ତି ନାହିଁ ସେ ! ବାଣୀବ୍ରତା ଶୁଣୁଶୁଣୁ ମୁହଁ ତାଙ୍କର କଳା ପଡ଼ିଯାଇଥିଲା । ପିଲାମାନେ ଚମକି ପଡ଼ିଥିଲେ । ସେ ମଧ୍ୟ ଭାବିଲେ ଏଇଟା ବଡ଼ବଡ଼ିଆଙ୍କୁ ଧରେ । ଅଥଚ ତାଙ୍କ ପରି ଅର୍ଥ ନଥିବା ଲୋକଙ୍କୁ କାହିଁକି ତା'ର ପଦପାତ ଶୁଣାଇଲେ ଭଗବାନ ! କ'ଣ ହୋଇଗଲେ ସେ ଏତେ ଟଂକା କେଉଁଠୁ ଆଣିବେ ?

କିନ୍ତୁ ବେଶୀଦିନ ସେ ଏଇ ଚିନ୍ତାଭାବନାରେ ବସି ରହିବା ଲୋକ ନୁହଁନ୍ତି । ଘର ସଂସାରର ଡଂଗା ତାଙ୍କୁ ହିଁ ବୋହିବାକୁ ପଡ଼ିବ । ଜୀବନକୁ ଭୟକଲେ ହେବ କ'ଣ ? ପୁନଶ୍ଚ ସେ ଅଣ୍ଟା ଭିଡ଼ିଲେ । ପ୍ରାତ୍ୟାହିକ କାମରେ ଆଗେଇ ଚାଲିଲେ । ଆଉ ମନେ ପକାଇଲେ ନାହିଁ ସେହି ଭୟାବହ ଚିନ୍ତାକୁ । ବାଣୀବ୍ରତା ଭାବନ୍ତି ସେ କିଛି ଭାବୁ ନାହାନ୍ତି । ବଡ଼ ଦାୟିତ୍ୱହୀନ । କେବଳ ପଇସାଟିଏ କେମିତି ଆସିଲେ ତେଲ, ଲୁଣ, ଡାଲି, ପରିବା, ଜିରା, ଲଂକା କେଉଁଠି କିଣା ହେବ ସେ ଚିନ୍ତା ତାଙ୍କର । ପଇସା ସର୍ବସ୍ୱ ମଣିଷଟିଏ । ଏଇ ପଇସା ପଇସା ହୋଇ ଦିନ ଯାଉଛି । ଘର ଚଳେଇବାର ଚିନ୍ତାଛଡ଼ା ଆଉ ଯେପରି ପୃଥିବୀରେ ସେ କିଛି ଜାଣି ନାହାନ୍ତି । ଏମିତିକି ବୁଢ଼ା ବୟସରେ ଭଗବାନଙ୍କୁ ଜପ, ତପ କରିବା, ପ୍ରବଚନ ଶୁଣିବାକୁ ଯିବା, ମନକୁ ସାଂସାରିକ ଦାୟ ଦାୟିତ୍ୱରୁ ଦୂରେଇ ନେଇ ମୁକ୍ତ ହୋଇଯିବା ତାହା ଚିନ୍ତା କରିବା, କିଛି ହେଲେ ନାହିଁ । କେମିତି ମଣିଷଟାଏ, ସେ !

ଆଦିତ୍ୟ ଜାଣନ୍ତି ବାଣୀବ୍ରତା ଏସବୁ କହିବେ । ଅଭିମାନ ବାଡ଼ିଦେବେ । ହେଲେ ଘର ଚଳାଇବା ଚାବିକାଠି ଯିଏ ଧରିଛି, ସେହି ଜାଣେ ତା'ର କଷ୍ଟ । ସେ ବୁଝିବାର ଦାୟିତ୍ୱ ମୁଣ୍ଡକୁ ନେଇଛନ୍ତି ସେଇଟା ତାଙ୍କର ପ୍ରକୃତି । କେମିତି ବା ସ୍ୱାର୍ଥପର ହୋଇ କହିବେ- ଯିଏ ଯାହାକଥା ବୁଝ, ସେ ଏସବୁ ପାରିବେ ନାହିଁ । ସେ ଏକଥା କଦାପି ଚିନ୍ତା କରି ପାରନ୍ତି ନାହିଁ । ବଡ଼ ଦୋଷୀ ଦୋଷୀ ଲାଗେ । ସଂସାରର ଦାୟିତ୍ୱ ନ ତୁଲାଇ ପଳାତକ ପରି ସ୍ୱାର୍ଥପର ହେବାକୁ ତାଙ୍କୁ ଭଲ ଲାଗେ ନାହିଁ ।

ଆଦିତ୍ୟ ପହଞ୍ଚିଲେ । ବାଣୀବ୍ରତା ତରବର ହୋଇ ଧାଇଁଲେ କିଚେନ ରୁମ୍‌କୁ । ଶାନ୍ତି ଶୋଇଥିଲା ଅନ୍ୟ ଘରେ । ସବୁବେଳେ ଟିକେ ଶୋଇପଡ଼ିବା ତା'ର ଲକ୍ଷଣ । କିଚେନ ରୁମରେ ସୁଜି ତିଆରି କଲେ । ପ୍ୟାଣ୍ଟ, ସାର୍ଟ ବଦଳି ଗୋଡ଼ ଧୋଇବାକୁ ଗଲେ ଆଦିତ୍ୟ । କୂଅ ପାଖରେ ଶିଉଳିର ଆସ୍ତରଣ । ପାଇପ ପାଖରେ ବି । ଆଜିକାଲି ଇଟାଟାଏ ଆଣି ଘଷିବାବେଳକୁ ଧଇଁସଇଁ ହୋଇଯା'ନ୍ତି । ତଥାପି ସେ ହିଁ କାମ କରନ୍ତି ।

ଅନ୍ୟମାନେ କେହି କରନ୍ତି ନାହିଁ । ସମ୍ମାନହୀନ କାମ ଭାବି । ମଝିଆଁ ପୁଅ ତ ଆଦୌ ଶୁଣିବନି । ମୁହଁ ଭୁରୁଗାଁ କରି ଚାଲିଯିବ କ୍ରିକେଟ ବଲ ପିଟିବାକୁ । ବାଣୀବ୍ରତା ଏସବୁ କ'ଣ ପାରିବେ ? ଆଜ୍‌ମା ପେସେଣ୍ଟ ସେ । କଥା କହିଲା ବେଳକୁ ସାହାସୀ ଯାଆନ୍ତି । ପରିସ୍କାର ଶୁଣାଯାଉନି ତାଙ୍କର ବକ୍ତବ୍ୟ । ଫୁସ୍‌ଫୁସ୍‌ର କାପାସିଟି କମି ଆସୁଛି । ଆଜିକାଲି ତାଙ୍କ ମୁଣ୍ଡ ଏତେ ଧରୁଛି ଯେ ଟାଣଭିଡ଼ କାମ କରିବାକୁ ସେ ପାରିବେ କେଉଁଠି ? କେବଳ ରୋଷେଇଘରର ଦାୟିତ୍ୱ ତୁଲାଉଛନ୍ତି ଛ'ଷଠି ବର୍ଷ ବୟସରେ । ଶାନ୍ତି ଆଜି ଅଛି କାଲି ଗାଁ କୁ ଚାଲିଯିବ । ତା'ର ଦୁଇଦିନର ଏଇ ମେହମାନ ଭଳିଆ ଉପସ୍ଥିତି ମଧ୍ୟ କେଉଁ କାମକୁ ପାଏନା । ବାଣୀବ୍ରତା ଘୋଷାରି ହୋଇ କାମ କରୁଥିବେ ସକାଳ ପାଞ୍ଚରୁ ଉଠି ରାତି ଏଗାରଯାଏ । କେହି ସାହାଯ୍ୟ କରିବାକୁ ନାହିଁ । ତାଙ୍କର ମୁକ୍ତି କେବଳ ମୃତ୍ୟୁରେ ବା ରହିତ ହୋଇଗଲେ । ତା' ବିଶ୍ୱାସ କରନ୍ତି ଆଦିତ୍ୟ ।

ବାଣୀବ୍ରତା ସୁଜିନେଇ ଆସିଲେ । ମିଠା କମ୍ ଲାଗୁଛି, ବେଶୀ ଚିନି ଖାଇବା ଆଦିତ୍ୟଙ୍କର ପିଲାଦିନର ଅଭ୍ୟାସ । ବାଣୀବ୍ରତା ଚିହିଁକି ଉଠିଲେ । ଏତିକି ପିଲାଙ୍କପରି ଚିନି ଖାଉଛ । ଘରେ ଅଳ୍ପ ଚିନିଥିଲା । ସେଇଥିରେ ଚଳେଇ ଦେଇଛି ।

– ମୋରି ଖାଇବା ତୁମ ଆଖିକୁ ଦିଶିଲା । ମୁଁ ଖାଇବାବେଳକୁ ସରିଯାଉଛି ସବୁ । କାଲିପରା ସାହୁ ଦୋକାନରୁ ଅଢେଇଶହ ଆଣିଥିଲି ।

– ହିସାବ କରୁନା । କେତେଥର ଚା' ହୋଇଛି । ତୁମେ କେତେଥର ଜଳଖିଆ ଖାଇଛ । ଆଉ ଅନ୍ୟମାନେ । ବାହାର ଲୋକ କିଏ କେମିତି ଆସିଲେ ଚା' କପେ ତ ପୁଣି ଦିଆହେବ ।

– ୟା ବୋଲି ଦିନକୁ ଅଢେଇଶ' ଖର୍ଚ୍ଚ କରିବ ? ମୋର ଏତେ ପଇସା ନାହିଁ । ସାହୁ ତା' ଖାତାରେ ବାକି ଦେଉଛି ବୋଲି କେତେ ବଢେଇ ଲେଖୁଛି ତା' ଜାଣିଛ ? ଏଇ ମୌକାନେଇ ସେମାନେ କଡ଼ାଗଣ୍ଡା ହିସାବକରି ତା' ଉପରେ ସୁଧ ଠୁକୁଛନ୍ତି । ଏ ମାସରେ ତା' ପଇସା ନେଇନି । କହିଛି ବନ୍ଦକରିଦେବ ବାକି ଦେବା । ସେତେବେଳକୁ ବୁଝିବ ।

– ମୁଁ କେଉଁ ଖାଉଛି ଯେ ବୁଝିବି । ତୁମେ ଆଉ ତୁମର ପିଲାମାନେ ଖାଉଛନ୍ତି । ମୋର କେଉଁ ନିଶାଟା ଅଛି ଯେ ମୁଣ୍ଡ ଘୂରେଇ ଦେଉଛି । ତୁମର ଚା' ପିଇବା ଦରକାର । ଚିନି, ଚା' ପତି ଏସବୁ ରେଡ଼ିହୋଇ ଘରେ ରଖିବା ଦରକାର । ତୁମେ ହନ୍ତସନ୍ତ ହେବ । ମୋର କ'ଣ ଚା,' ବିଡ଼ି, ପାନ, ଗୁଡ଼ାଖୁ ଅଭ୍ୟାସ ଅଛି ଯେ ମୋତେ ଚିନ୍ତା ହେଉଛି । ଯାଉନା । ସେ ପାଟି ଏଠି କରନାହିଁ ।

ଆଦିତ୍ୟ ଚୁପ୍ ହୋଇଗଲେ । ସନ୍ଧ୍ୟା ଆସୁଛି । ବାଣୀବ୍ରତା ବାହାରିଲେ ସଞ୍ଜ ଦେବାକୁ । ଠାକୁରଘର ଭିତରେ ସେ ଏବେ ଗୋଟାଏ ଘଣ୍ଟା କଟାଇବେ । ନାମ ନେଇଛନ୍ତି

କେଉଁଠି । ଯାହାକୁ ଜାଣିଲେ ପ୍ରବଚନ ଦେଉଛନ୍ତି କି ଯେଉଁଠି ଠାକୁରଙ୍କ ବିଷୟରେ ନାମ କିର୍ତ୍ତନ ଚାଲିଛି ସେଠିକି ଚାଲିଲେ । ସେ ବୁଝିପାରନ୍ତି ନାହିଁ ତାତ୍ତ୍ୱିକ ଦୃଷ୍ଟିରୁ ସେ କିଛି ବୁଝନ୍ତି କି ନାହିଁ । କେବଳ ଠାକୁର ପୂଜାକଲେ ପୁଣ୍ୟ ଅର୍ଜିବେ, ସେହି ମୋହର ଆକୁଳତା ତାଙ୍କଠି ଅଧିକା । କହିଲେ ଯୁକ୍ତି କରନ୍ତି ବାଣୀବ୍ରତା । ତୁମପରି କ'ଣ ମୁଁ ହେବି । ଖା', ପିଅ, ଶୁଅ । ଦୋକାନ ସଉଦା କର । ଯିଏ ଆସିଲେ ଭଡ଼ାଏ ଗପ । ମଣିଷହୋଇ ଠାକୁରଙ୍କୁ ଡାକିବନି । ମୋର ଜ୍ଞାନ କ'ଣ ଦରକାର । କେଉଁ ଦାସିଆ ବାଉରୀ ପାଠ ପଢ଼ିଥିଲା । ନାଁ ସାଲବେଗ, ବଂଧୁ ମହାନ୍ତି ଏତେ ପାଠପଢ଼ି ଥିଲେ । ତୁମର ଟିକେ ଭକ୍ତି ତ ରହିବା କଥା । ସେ କୌଣସି କଥା କହିବାମାତ୍ରେ ଚିହିଁକି ଉଠନ୍ତି ତାଙ୍କ ଉପରେ ଆଉ କାଟିଥୋଇ ଦିଅନ୍ତି ଯୁକ୍ତିରେ । ଆଦୌ ମାନନ୍ତି ନାହିଁ । ଯାହା ବୁଝିଥିବେ ସେଇଆ । ବଡ଼ ଜିଦ୍‌ଖୋର । ସ୍ୱାଧୀନ ମନନେଇ ଚଳିବେ । ସେଥିପାଇଁ ତାଙ୍କ ଉତ୍ତର ବେଳେବେଳେ ତାଙ୍କୁ କଷ୍ଟଦିଏ । ଆତ୍ମ ସମ୍ମାନକୁ ବାଧେ । ହେଲେ ସେ ପାରନ୍ତି ନାହିଁ । ଏଇ କିଛି ବର୍ଷ ତଳେ ଏକତ୍ରିଶ ବର୍ଷିଆ ପିଲାଟା ସାଙ୍ଗରେ ଯାଇ ତାଙ୍କ ସତସଙ୍ଗରେ ଦୀକ୍ଷା ନେଇ ଆସିଛନ୍ତି ଦିଲ୍ଲୀରୁ । ଫେରିବା ଦିନଠୁ ଠିକ୍ ସମୟରେ ନିଃଶ୍ଚୟ ମାଳି ଗଡ଼େଇବେ । ଅନ୍ୟଥା କରିବେନି ।

ସେହି ଏକତ୍ରିଶ ବର୍ଷିଆ ପିଲାଟି ଅବଶ୍ୟ ଖୁବ୍ ଭଲ ସ୍ୱଭାବର । ପିଲାଦିନୁ ଧ୍ୟାନ କରେ ସେ । ମୁହଁଟି ଦେଖିଲେ ଶାନ୍ତ ସମାହିତ ଲାଗେ । ହସଟି ଝରିପଡ଼େ ଅମୃତପରି ମାଉସୀ ଡାକିଦେଲେ । ଡିପ୍ଲୋମା ପାଶ କରିଛି ଟେକ୍‌ନିକାଲ ସାଇଡ଼ରେ । ହେଲେ ଚାକିରି କରେନା । ଅଳ୍ପଦିନ ଚାକିରି କରିଥିବ ପୁଣି ଛାଡ଼ି ଆସିଯିବ । କ'ଣ ନାଁ ଧ୍ୟାନ କରିବାରେ ଅସୁବିଧା ହେଉଛି । ଚାକିରି ଛାଡ଼ି ଏମିତି ବୁଲୁଥାଏ ଧର୍ମର ମହାତ୍ମ୍ୟ ବଖାଣି । କେହି ଯୁବକ ଲୋକ ତା'ର ସାଙ୍ଗ ନଥାଏ । ବୁଢ଼ାବୁଢ଼ୀ ଯେତେକ ତା' କଥା ଶୁଣନ୍ତି । ଗଦ୍‌ଗଦ୍ ହୁଅନ୍ତି । ସତସଙ୍ଗ ଆୟୋଜନ କରେ । ଅହରହ ସେହି ଧ୍ୟାନ ଧାରଣାରେ ସେ ମଜ୍ଜି ରହିଥାଏ । ତା'ରି ଅମୋଘ ଆକର୍ଷଣରେ ସେ ବାଣୀବ୍ରତାଙ୍କୁ ତାଙ୍କ ହେଡ଼ ଅଫିସ ଫରିଦାବାଦ ରାସ୍ତାରେ ଅନଙ୍ଗପୁର ଯାଏ ନେଇଯାଇ ପାରିଲା । ସେଠି ଦୀକ୍ଷାନେଇ ସେ ଫେରିଲେ । ସେହି ଦିନଠୁ ଲାଗିଛି ଜପତପ, ଧ୍ୟାନ, ମାଳିଗଡ଼ା । ଭଲହେଲା । ସେ କରୁ ନାହାନ୍ତି ବୋଲି ବାଣୀବ୍ରତା କାହିଁକି ବନ୍ଦ କରିବେ ଏସବୁ । ତେଣୁ ସେ ଆକଟନ୍ତି ନାହିଁ । ବରଂ ବାଣୀବ୍ରତାଙ୍କର ଆକ୍ଷେପକୁ ଅଭିମାନକୁ ଶୁଣି ନଶୁଣିଲାପରି ରହିଥାନ୍ତି । ଘର ଚଳେଇବାର ଅଭାବବୋଧ ହିଁ ତାଙ୍କ ଉପରେ ତ ବ୍ରହ୍ମରାକ୍ଷସ ହୋଇ ବସିଥାଏ । ସେ ସେଥିରୁ ମୁକ୍ତ ହୋଇ ପାରନ୍ତି ନାହିଁ । ସେକଥା କ'ଣ ବାଣୀବ୍ରତା ବୁଝିବେ ! ଗୋଟାଏ ପେନ୍‌ସନ୍‌ର ଘରର ସବୁଦାୟିତ୍ୱ ନେବା ଯେ କେତେ କଷ୍ଟ ସେହିଁ କେବଳ ଜାଣନ୍ତି ।

ବାଣୀବ୍ରତା ଠାକୁରଘରୁ ନ ଆସଣୁ ପହଞ୍ଚିଲେ ତାଙ୍କ ବନ୍ଧୁ ସୁରମା ଦେବୀ । ଗେଟ ଖୋଲୁଖୋଲୁ ଶାନ୍ତି ଆସି ଗୋଡ଼ତଳେ ପଡ଼ିଲା । ଟିକିଏ ପୃଥୁଳ ଶରୀର । ଚାଲିଲା ବେଳକୁ ଢଳିଢ଼ଳି ଚାଲନ୍ତି । ପିନ୍ଧିଥିଲେ ପରିଷ୍କାର ଧଳାଶାଢ଼ୀ । ହାତରେ ମିଠା ପ୍ୟାକେଟ୍ । ସନ୍ଧ୍ୟାବେଳିଆ ସେ ଅଧିକାଂଶ ସମୟରେ ଆସନ୍ତି ।ହେଲେ ଆଜି କେଉଁ ଖୁସୀରେ ସେ ମିଠା ଆଣି ଆସିଥିଲେ କେଜାଣି !

ବାଣୀବ୍ରତା ପୂଜାରୁ ଉଠିଲେ । ସାଙ୍ଗ ସୁରମାଙ୍କୁ ଦେଖି ଅନେକଟା ଖୁସୀ । ପରିଷ୍କାର ହସଟିଏ ତାଙ୍କ ଓଠରେ  ଲାଗି ରହିଥିଲା ।

-ସାଙ୍ଗ ! କ'ଣ ଏସବୁ ।

-ନାଇଁ ମ କିଛି ନୁହେଁ । ସାନ ପୁଅର ଶ୍ୱଶୁର ଘରୁ ଭାର ଆସିଥିଲା । ସେଥିପାଇଁ ଏ ମିଠା । ତୁମେ ଏ ଯାଏ ମନ୍ଦିର ଯାଇନା ।

-ମନ୍ଦିର ନଗଲେ କ'ଣ ଭଲ ଲାଗିବ କି ! ନିଶ୍ଚୟ ଯିବା ନା । ସନ୍ଧ୍ୟା ଦେଉଥିଲି ।

ଏବେ ପରା ୟାଙ୍କୁ ବୁଝାଉଥିଲି । ଖାଲି ଘର ଚିନ୍ତା କରିକରି ତୁମର ସମୟ ଗଲା । ଟିକେ ଠାକୁରଙ୍କୁ ଡାକ । ହେଲେ ମୋ କଥା କ'ଣ ଶୁଣୁଛନ୍ତି । ତୁମରି ବୟସର କେତେଲୋକ ପ୍ରବଚନ ଶୁଣିବାକୁ ଆସୁଛନ୍ତି । ଗୀତା, ଭାଗବତ ପଢୁଛନ୍ତି । ଠାକୁରଙ୍କୁ ଡାକୁଛନ୍ତି । ତମର ଖାଲି ସେ ସାହୁ ଦୋକାନରେ ବସି ଏଇ ଘର ସମସ୍ୟା ବଖାଣିବା ଛଡ଼ା କିଛି ନାହିଁ । ଲୁଚିଲୁଚି ଏବେ ମାନସ ଦୋକାନ ଆଗରେ ଠିଆହୋଇ ବିଡ଼ି ଖାଉଥିଲେ । ପୁଅ ଦେଖି କହୁଥିଲା । ହାର୍ଟ ଡାକ୍ତର କେତେଥର ମନାକଲେଣି । ବିରକ୍ତହୋଇ କହୁଥିଲେ ଯଦି ବିଡ଼ିଖାଇବେ କାହିଁକି ହାର୍ଟର ଚେକ୍‌ଅପ୍ ହେଉଛନ୍ତି । ଔଷଧ ଗିଳୁଛନ୍ତି । ଏମିତି ଅମାନିଆ ହୋଇ ଆମ ଜୀବନକୁ ଖାଇବା କଥା ।

ସୁରମା ଦେବୀ ଖୁବ୍ ସିରିଅସ୍ ଦେଖାଗଲେ । ଆଖି ଦୁଇଟା ତାଙ୍କର ଉପରକୁ ବାହାରିବାପରି ଦେଖାଯାଏ । ହାଇ ଡାଏବେଟିସ୍ ପେସେଣ୍ଟ । କହିଲେ- ଆଜ୍ଞା ସେଗୁଡ଼ାକ ଆଦୌ ଛୁଅନ୍ତୁ ନାହିଁ । ନିଜେ ଭଲ ରହିଲେ ସିନା ନିଜକାମ କରିପାରିବେ । କେଉଁ ପୁଅବୋହୂ ବୁଢ଼ାକାଳେ ଘୋଷାରିବେ ! ଦିନେ କରିବେ କି ଦି' ଦିନ । ତା'ପରେ ଭାବିବେ କାହିଁକି ବୁଢ଼ାଟା ଆମକୁ ଘଣ୍ଟଉଛି । ମରିଯାଉନି । କିଏ ଏତେ କରିବ ! ପୁଣି ଆଜିକାଲିର ଚାକିରିଆ ବୋହୂ ସକାଳୁ ଉଠି ଅଫିସ୍ ଦୌଡ଼ିବେ । କିଏ ଆସି ଶ୍ୱଶୁରକୁ ଦେଖିବେ କହିଲେ ? ଦେହ ଭଲ ଅଛି ତ ଦୁନିଆ ଭଲ । ଘରେ ବି ବସିରହି କ'ଣ ସମୟ କଟାଇପାରିବେ ? ମଣିଷହୋଇ କେଉଁଠିକି କେମିତି ଯିବେ ତ ପୁଣି ! କାହିଁକି ନିଜ ହାତରେ ଜାଣିଜାଣି ରୋଗ କିଣୁଛନ୍ତି କହିଲେ ! ମୋ ଛୋଟକୁହା କଥା ମାନନ୍ତୁ । ବିଷ ଗୁଡ଼ାକ ଆଦୌ ପିଅନ୍ତୁ ନାହିଁ ।

ହେଲେ ସେ କିଛି ମାନନ୍ତି ନାହିଁ । ହସି ଦିଅନ୍ତି । ହୁଁ...ମ ବାରବର୍ଷ ବୟସରୁ ବିଡ଼ି ଟାଣୁଛି ଆଉ ଏ ବୁଢ଼ାକାଳେ ଛାଡୁଛି । କେତେଥର ଛିଗୁଲେଇ କହିଛନ୍ତି ବାଣୀବ୍ରତା । ବିରକ୍ତ, ବିମର୍ଷ ଭାବ ପ୍ରକଟ କରିଛନ୍ତି । ଅଥଚ ତାଙ୍କର ବୁଦ୍ଧି ଉଦୟହେବା ସେ ଦେଖିଲେନି । ମଣିଷ କାହିଁକି ଏମିତି ହୁଏ ? ହୋଇଯାଏ ? ଉଚିତ କଥା ବି ଶୁଣେନି । ମନ, ଇନ୍ଦ୍ରିୟ ଏତେ ଅବୁଝା ? ମୋହ ଛାଡ଼ିବା ଏତେ କଷ୍ଟ ? ଲୋଭକୁ ସମ୍ବରଣ କରିବା କି ଏତେ ଦୂରୁହ ?

ବୟସର କଥାକହି ମଣିଷ ନିଜକୁ ବୁଝାଇ ଦେଇପାରେ । କିନ୍ତୁ ଏଇଟା କ'ଣ ସତ ବାରବର୍ଷ ଯାହା ସତୁରୀ ସେଇଆ । ଶରୀର ବା କେତେ ଶକ୍ତ ରହିପାରେ ? ମଣିଷ ତ ନିହାତି ମାମୁଲି ସମୟ ଆଗରେ । ସାମାନ୍ୟ ଗୋଟାଏ ଜୀବାଣୁ ପଶିଗଲେ ଅବକ୍ଷୟ ଆଣିଦେବ ଶରୀରରେ । ନାଁ ତାକୁ ଆୟତ କରିପାରିବ ମଣିଷ ନାଁ ଡାକ୍ତର ? ଖାଲି କ୍ଷୟ ହିଁ କ୍ଷୟ । ତା' ମଣିଷ ବୁଝେନା । ମନୁଆ ମନଟିଏ ନେଇ ଚଳେ । ସେଇଥିପାଇଁ ଦିନେ ହାବୁଡ଼ିଯାଏ ନିର୍ମମ ବାସ୍ତବତା । ସେତେବେଳକୁ ମଣିଷ ହୋଇଯାଏ ଉପାୟଶୂନ୍ୟ ।

ଏତିକିବେଳକୁ ପଶି ଆସିଲେ ଭଣଜା ବଟକୃଷ୍ଣ । କହିଲେ କ'ଣ ଏଠି ଚାଲିଥିଲା ? ଏମିତି କାହିଁକି ଗମ୍ଭୀର ହୋଇ ବସିଛ ମାଇଁ ?

– କ'ଣ କରିବି ଆଉ । ଯେତେ ବୁଝାଇଲେ ବି ବୁଢାହେଲେଣି ଆସି, କଥା ମାନୁନାହାନ୍ତି । ସିଗାରେଟ୍ ନ ଫୁଙ୍କିଲେ ଯେମିତି ଭାତ ହଜମ ହେଉନି ତାଙ୍କର ।

– ଛାଡ଼...ଛାଡ଼ ମାଇଁ । କେତେଥର ବୁଝାଇଲାଣି ମୁଁ । ଜାଣନ୍ତି ମାଇଁ ! ଜେଜେ ଯେତେବେଳେ ବିଡ଼ି ଲଗେଇ ଆଣିବାକୁ କୁହନ୍ତି, ସେଥିରୁ କଳେ ଫୁଙ୍କି ମାମୁଁ ଆସନ୍ତି । ସେଉଠୁ ଆରମ୍ଭ ହୋଇଛି ଯେତେ ବଦାଭ୍ୟାସ । ବାପା ପିଅନ୍ତି ପୁଅ ବି । ଆଉ ମୋତେ ଦେଖିଲେ, ପଞ୍ଚାବନ ବର୍ଷ ହେଲାଣି । ମୁଁ ବି ମାମୁଁ ଘରେ ରହି ପାଠ ପଢୁଥିଲି । ଏକାଘର ଏକା ପରିବେଶରେ । ହେଲେ ଗୋଟାଏ ବି ବିଡ଼ି ଛୁଇଁନି । ସଂଘର୍ଷ କରି ପାଠ ପଢ଼ିଛି । ମାଟ୍ରିକ ପାଶ ପରେ ଚାକିରି କରି ପାଠ ପଢ଼ିଛି । ଏମ.ଏ ପାଶକରି ପି.ଏଚ୍.ଡ଼ି କରି ପ୍ରାଧ୍ୟାପକ ଆଜି ବି.ଜେ.ବି କଲେଜରେ । ଅଥଚ ଏମାନଙ୍କର ପଇସାଥିଲା ପାଠ ପଢ଼ିବାକୁ । କିନ୍ତୁ ଏଇ ବିଡ଼ି ଟାଣି, ପାଠରେ ମନ ନଦେଇ ଜେଜେଙ୍କ ପଇସା ଉଡ଼େଇ ଦେଲେ । କ'ଣ ସୁବିଧା ନଦେଇଥିଲେ ଜେଜେ ? ସେ ଖଣ୍ଡମଣ୍ଡଳରେ କାହାର ସାଇକେଲ ନଥିଲା । ଏମାନେ ଚଢ଼ି ବୁଲୁଥିଲେ । ବାବୁଘରର ପୁଅଥିଲେ । ହେଲେ ଏମାନେ ହେଲେ ଅଯୋଗ୍ୟ । ପାଠ ପଢ଼ାରେ ଆଗେଇ ଯାଇଥିଲେ ଜେଜେ ପଇସା ଖର୍ଚ୍ଚ କରିବାକୁ ରାଜିଥିଲେ । ଛାଡ଼ନ୍ତୁ...ମାଇଁ ! ଏବେ ଟିକେ ବୁଢ଼ା ବୟସରେ ହୁସିଆର ରହିବା କଥା । ତା' ବି ଶୁଣୁନାହାନ୍ତି । ନିଜେ ଦେଖିଛି, ସେଦିନ ଆସିଲା ବେଳକୁ

ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇଗଲି । ଅନ୍ଧାରରେ ସଜନା ଗଛ ଆଢୁଆଳରେ ମାମୁଁଙ୍କର ବିଡ଼ିଟଣାର ଦୃଶ୍ୟ ଦେଖି । କାଳେ ପାଟି କରିବିବୋଲି ନିଆଁକୁ କାଛରେ ଘଷି ସେଇଠି କେଉଁଠି ରଖିଦେଇ ଆସିଲେ ।

ବଟକୃଷ୍ଣଙ୍କର କହିବାର ଭଙ୍ଗୀ ବଡ଼ ତୀବ୍ର । ଯେମିତି କି ତୂଣୀରୁ ତୀରଟାଏ ଛୁଟି ଚାଲିଛି । ମୁରୁକି ହସୁଥିଲେ ବି ବଡ଼ ପ୍ରତିକ୍ରିୟାଶୀଳ ସେହି ବକ୍ତବ୍ୟମାନ ।

ବାଣୀବ୍ରତା ମୁହଁ ତଳକୁ କଲେ । କହିଲେ-କ'ଣ କରିବି ଆଉ । ମୋତେ ଯେତେ ମାଠିବୁ ମାଠ । ମୁଁ ସେହି ଦରପୋଡ଼ା କାଠ । ଯାହା ତାଙ୍କର ବେଳାଥିବ ତା ଭୋଗିବେ । ତୁମେ ବସି କଥା ହେଉଥାଅ । ମୁଁ ମନ୍ଦିରରୁ ଆସେ । ସାଙ୍ଗ ଆସି କେତେବେଳଠୁ ଅପେକ୍ଷା କଲେଣି ।

ବାଣୀବ୍ରତା ବାହାରିଗଲେ ମନ୍ଦିରକୁ । ପ୍ରତିଦିନର ଅଭ୍ୟାସ ତାଙ୍କର । ପିନ୍ଧିଥାନ୍ତି ପରିଚ୍ଛନ୍ନ ଧଳାଶାଢ଼ୀ । ଲାଲ ବର୍ଡ଼ର । ସନ୍ଧ୍ୟା ଆଳତି ଆଗରୁ ପହଞ୍ଚନ୍ତି ସେ । ସେଠି ବସିରୁହନ୍ତି ଘଡ଼ିଏ । ସାହିରୁ ଅନେକ ସ୍ତ୍ରୀ ଲୋକ ଆସିଥାନ୍ତି । ସେମାନଙ୍କ ସହ ଗପ ହୁଏ । ପାରସ୍ପରିକ ସ୍ନେହ, ସୌହାର୍ଦ୍ଦ ଜାରିରଖନ୍ତି ବନ୍ଧୁତ୍ୱ ସୂତ୍ରରେ । ସମସ୍ତଙ୍କୁ ଭଲ କହିବାରେ, ଭଲ ପାଇବାରେ ଛଳଛଳ ତାଙ୍କର ହୃଦୟ । ମଣିଷ ସହିତ ମଣିଷର ସଂପର୍କ ତିଆରି କରିବାରେ ଅଫୁରନ୍ତ ତାଙ୍କ ପ୍ରାଣର ସ୍ପନ୍ଦନ । ଆନନ୍ଦର ନିତ୍ୟ ପ୍ରବାହମାନ ଧାରା ଅବା । ସାଙ୍ଗଟି ମଧ ଖୁବ୍ ଭାବ ବିହ୍ୱଳ, ସ୍ନେହୀ । ଦୁଇ ସମବୟସ୍କଙ୍କର କଥୋପକଥନରେ ଲାଗି ରହିଥାଏ ଜୀବନର ଜୀବନ୍ତ ସ୍ପନ୍ଦନ । ହସାହସି, ଥଟ୍ଟା ମଜା ପୁଅବୋହୂଙ୍କର ସମସ୍ୟା ନେଇ ଆଲୋଚନା ଭିତରେ ଆନ୍ତରିକତାର ପ୍ରଲେପ ଥାଏ । ସୁଖ, ଦୁଃଖ ବାଣ୍ଟିହୋଇଯାଏ ଆପଣା ଛାଏଁ । ମନର ମଣିଷ ଆଗରେ ପ୍ରାଣଖୋଲା ଗପ ଗପିଦେଲେ ଦୁଃଖର ଭାର ଲାଘବ ହୋଇଯାଏ । ସଂପର୍କଟିଏ ତିଆରି କରିପାରିଲେ ଏମିତି ମଣିଷ ପାଇଥାଏ ବିପୁଳ ଆନନ୍ଦ ।

ଆଜି ଡେରିହୋଇ ଗଲାଣି । ମନ୍ଦିରର ଆଳତି ଆଉ ଦେଖିହେଲାନି । କିନ୍ତୁ ଦର୍ଶନ ତ କରିହେବ । ଘଡ଼ିଏ ତ ବସିହେବ ଘର ସଂସାରର ଅଣନିଶ୍ୱାସୀ ପରିବେଶରୁ ।

ପ୍ରତିଦିନ ତୁଳସୀପତ୍ର ନେଇ ଫେରନ୍ତି ବାଣୀବ୍ରତା । ଘରର ସମସ୍ତଙ୍କ ହାତରେ ଦିଅନ୍ତି । ସତେ କି ସେ ଫେରିବା ବେଳକୁ ଚାହିଁ ରହିଥାନ୍ତି ସମସ୍ତେ । ଟିକେଟିକେ ତୁଳସୀ ପାଇବାକୁ ।

ଆଜି ବାଣୀବ୍ରତା ଘରକୁ ଫେରୁଫେରୁ ଗାଧୁଆ ଘରେ ପଶିଗଲେ । ଲୁଗାପଟା ଧୋଇହେଲେ । ଆଖି ତାଙ୍କର ଲାଲ ପଡ଼ିଯାଇଛି । ଯେମିତି କେଉଁ ଦୁଃଖରେ ମୁହ୍ୟମାନ । ସୌମ୍ୟ ଆସି ପହଞ୍ଚିଲା । ଗୋଟାଏ ମୁରୁକା ହସଦେଇ ଭାବିଲା କେଉଁ ଛୁଆଁଛୁତ ର ରୋଗ ପଶିଯାଇଛି କି କ'ଣ । ନହେଲେ ଏ ସମୟରେ ଗାଧୋଇକରି କାହିଁକି ବୋଉ ବାହାରୁଛି । ହସି କି କହିଲା- କ'ଣ ଏମିତି ଛୁଆଁ ହେଲା ଯେ ସିଆଡୁ ଆସି ରାତିଟାରେ

ଗାଧୋଇ ଦେହ ଖରାପ କରୁଛୁ । ଏମିତି ହୋଇ ଆଜ୍‌ମା ଭୋଗୁଛୁ । ମାନିଆ ରୋଗ ଛାଡ଼ ।

ବାଣୀବ୍ରତାଙ୍କର ଆଖି ଲୁହ ଛଳଛଳ ହୋଇଗଲା । କହିଲେ ସେଥିପାଇଁ ନୁହେଁ । ଗୋଟାଏ ହିରୋହୁଣ୍ଡାବାଲା ମୋତେ ଏବେ ଧକ୍କା ଦେଇଥାନ୍ତା । ମୋ ଗୋଡ଼ରୁ ସ୍ଲିପରଟା ଛିଟିକି ପଡ଼ିଲା । ମୋ ଗୋଡ଼ ପଡ଼ିଲା ଗୋବର ଉପରେ । ସାହୁ ପୁଅ ସେଠି ଦେଖୁଥିଲା । ମାଉସୀଙ୍କର କ'ଣ ହେଲା କହି ଦୌଡ଼ି ଆସିଲା ସ୍ଲିପରଟା ନେଇ ସେଥିପାଇଁ ଗାଧୋଉଛି ।

ମୁହଁରେ ତାଙ୍କର ଭୟ । ଆଶଙ୍କାର ଗୋଟାଏ କରାଳ ଛାଇ ଅବା ଦୋହଲୁଛି । ହଠାତ୍ ଯେମିତି ମୃତ୍ୟୁ ମୁଖରୁ ଫେରିଆସି ଗୋଟାଏ ନୂତନ ଜୀବନର ପ୍ରାପ୍ତିରେ ସେ ଭାଗ୍ୟ ଭଗବାନଙ୍କର ଆଗରେ କୃତଜ୍ଞତାରେ ଛଳଛଳ । ତାଙ୍କ ଆଖିରେ ଜକେଇ ଆସୁଥିବା ଲୁହରୁ ତାହା ସ୍ୱଷ୍ଟ ।

ସୌମ୍ୟର ହସ ଠପ୍ କରି ରହିଗଲା । ନୀରବି ଗଲା ମୁହୂର୍ତ୍ତମାନ ଭୀଷଣ ଗୋଟାଏ ସ୍ତବ୍ଧତାରେ । ଏପ୍ରକାର ନିଷ୍ଠୁର ସତ୍ୟର ସାମ୍‌ନା ସାମ୍‌ନି ହୋଇପଡ଼ିବାର ଚେହେରା ଦେଖି । ଏମିତି କି ଜୀବନ ସୂଚେଇ ଦେଇଯାଏ, ଏଠି କିଛି  ବି ହୋଇପାରେ । ମଣିଷ କିଛି ନୁହେଁ । ତା'ର ବୋଲି କୌଣସି ଜିନିଷ ମଧ୍ୟ ନିଜର ନୁହେଁ । ଏ ଘରଦ୍ୱାର, ପିଲାଛୁଆ, ସ୍ୱାମୀ କୌଣସି ମୁହୂର୍ତ୍ତରେ ଅସାର ହୋଇଯାଇପାରେ । ସେସବୁ ହେବା ପାଇଁ ଲାଗେ ସମାନ୍ୟ ମୁହୂର୍ତ୍ତଟାଏ । ନହେଲେ ହେଇଟି ଜୀବନର ଏତେ ସମାରୋହ, ଆଡ଼ମ୍ବର ଆନନ୍ଦ ଝରିପଡୁଥିବାବେଳେ କେମିତି ଅଚାନକ ଆସେ ମୃତ୍ୟୁ ? କ'ଣ ହୋଇଥାନ୍ତା । ଯଦି ହିରୋହୁଣ୍ଡାରେ ବସିଥିବା ସେହି ଉଦ୍‌ଭ୍ରାନ୍ତ ଚାଳକ ତାଙ୍କ ସହ ଗାଡ଼ିଟା ପିଟି ଦେଇଥାନ୍ତା ? ମନ୍ଦିରରୁ ଘର, କେତେ ଅବା ରାସ୍ତା । ଏଇ ଛକ ଉପରୁ ଘରର ଗେଟ୍ କେତେ ପାଦମାତ୍ର, ହେଲେ ସେ କି ଫେରିପାରିଥାନ୍ତେ ଘରକୁ ?

କି ନିଦାରୁଣ ଏଇ ସମୟ ଆଉ କାଳ । ସେଥିପାଇଁ ସିନା ଯଥାର୍ଥରେ କବି କହିଛନ୍ତି ''ବଡ଼ କ୍ରୁର କାଳ ବଡ଼ ଅବିଶ୍ୱାସୀ/ହାବୁଡ଼ି ଯିବଟି ଆଚମ୍ବିତେ ଆସି ।''

ବାଣୀବ୍ରତା ଏଇ କଥା ଭାବି  ଥକାହୋଇ ବସି ପଡ଼ିଲେ ସୋଫା ଉପରେ । ଆଦିତ୍ୟ ଚୁପ୍‌ଚାପ ବସି ପେପର ପଢୁଥିଲେ ।

ବାଣୀବ୍ରତା କିଛି ନକହି ସେଇଠି ହିଁ ଚୁପ୍‌ଚାପ୍ ବସି ରହିଲେ । ରାତି ବଢୁଥିଲା ।

ଆସ୍ତେ କଣ୍ଠରେ କହିଲେ-ଯା ଭିତରେ ଟିକେ ହାର୍ଟ ଚେକ୍‌ଅପ୍ କଲନି ?

କେଜାଣି କାହିଁକି ଅନେକଟା ସହାନଭୂତିଭରା ଥିଲା କଣ୍ଠ ତାଙ୍କର ।

ଆଦିତ୍ୟ ପେପର ଉପରେ ସେମିତି ମୁହଁ ରଖିଥିଲେ । କେଉଁ ଗୋଟାଏ ସ୍ନେହରେ ଭିଜିଯାଉଥିଲା ଅନ୍ତର ତାଙ୍କର ।



## ( ୪ )

ଏକ ଦିନ ପ୍ରତିଦିନପରି ଆଜି ବି ଆସିଲା ସକାଳ । ବାଣୀବ୍ରତା ଆଦିତ୍ୟଙ୍କର ବଡ଼ି ଭୋରରୁ ଉଠିବା ଅଭ୍ୟାସ । ଶାନ୍ତି ସମୟ ପାଇଲେ ଟିକେ ଶୋଇପଡ଼ିବା ତାଙ୍କର ପୁରୁଣା ଅଭ୍ୟାସ । ଶ୍ୱଶୁର ଚାଲିଗଲେଣି ଚାକିରିକୁ । ଘର ଖାଲି । ସୌମ୍ୟ ତ ତା' ଦୋକାନରେ । ସେଥିରେ ତା'ର ସମୟାନୁବର୍ତ୍ତିତା ଅନେକଟା । ଘରର କୌଣସି ଦାୟିତ୍ୱ ନନେଲେ ବି ପରଘରେ ଖଟିବାର ଶୃଙ୍ଖଳ ତାକୁ ଭୟ ଆଣିଦିଏ । ସତେଅବା ହଜାର ଟଙ୍କିଆ ଚାକିରିଟି ଚାଲିଗଲେ ସେ ଗୃହଶୂନ୍ୟ ହୋଇ କେଉଁ ବରଗଛତଳେ ବସିବ ।

ଶାନ୍ତି ଗାଧୋଇ ଆସି ସମ୍ବଲପୁରୀ କଟନ୍ ଶାଢ଼ୀଟିଏ ପିନ୍ଧିଲେ । ଖୁବ୍ ମଇଳା ଦେଖାଯାଉଛି ଆଖିକୁ । ମୋଟାସୋଟା ପିନ୍ଧି ଜୀବନ ବିତାଇଦେଲେ ଯାଏ । କେଉଁ ଅଛି ଜୀବନରେ ତାଙ୍କର ବଞ୍ଚିବାର ଆଗ୍ରହ । ବାହା ହୋଇଛନ୍ତି, ଘର ସଂସାର କରିଛନ୍ତି, ତିନିତିନିଟା ଛୁଆ ଜନ୍ମ କରିଛନ୍ତି, ହେଲେ ବଞ୍ଚିବାର ଆନନ୍ଦ ତାଙ୍କର କାହିଁ ? ଗୋଟାଏ ମଳିନ ପଡ଼ିଯାଇଥିବା ମନନେଇ କେତେ ଆଉ ଫୁର୍ତ୍ତିଲାଗେ ମଣିଷକୁ ! ସବୁବେଳେ ନିଦ ହିଁ ନିଦ । ଆଳସ୍ୟର ଲକ୍ଷଣ ।

ଯାହା ହେଲେ ବି ସେ ଘରର ବଡ଼ ବୋହୂ । ସ୍ୱାମୀର ପଇସା ରୋଜଗାରର ପନ୍ଥା ନଥିଲେ ବି ସମ୍ମାନର ଅଧିକାରୀ ସେ । ପଡ଼ିଶା ଘରର ବୋହୂଟି ଆସିଲା । କହିଲା ଭାଉଜ : ଇଏ କ'ଣ ? ଏମିତି ମଇଳା ଶାଢ଼ୀ ପିନ୍ଧିଛ ।

ଶାନ୍ତି ହସିଦେଲେ ବଡ଼ ଭାଉଜ ସୁଲଭ ହସଟାଏ । - ହଁ ଚଳୁଛି ତ । କେଉଁ ଆମେ ଅଫିସ ଯାଉଛୁ । ଘରେ ଲୋଟଣୀ ପାରା ପରି ଖଟିବା କଥା । କଳାମଳା ଲାଗିବ ଏବେ ବାସନ ମାଜିଲା ବେଳକୁ ।

: ଲାଗବିବୋଲି କ'ଣ ଆମେ ସଫା ଲୁଗା ପିନ୍ଧିବା ନାହିଁ । ଭାଉଜ କାଲି ଆସିବି ମୁଁ । ଏସବୁ ଅଳସୁଆମି ଛାଡ଼ିଥିବ ବୁଝିଲ ।

ଶାନ୍ତି ଶ୍ୟାମ ବର୍ଣ୍ଣ । ଗଠନ ସୁନ୍ଦର । ଅଳ୍ପକଥା କୁହନ୍ତି । ଅଥଚ ହଠାତ୍ ନୀରବ ହୋଇପଡ଼ନ୍ତି । ବୋକାବୋକା ଭାବଟିଏ ମୁହଁକୁ ଚାହିଁଲେ ଲାଗେ ।

ଏବେ ସେ ପ୍ରତିବେଶୀନି ସହ ସହଜ ସୁଲଭ ଭାବେ କଥା କହିଦେଲେ । ବସିଥିଲେ ଗପିଥାନ୍ତେ । କିନ୍ତୁ ତାଙ୍କ ଯିବାପରେ ସେ ଶୋଇ ପଡ଼ିବେ ଘଡ଼ିଏ । ବଡ଼ ଅଜବ ଧରଣର । ଥଣ୍ଡା ଶୀତଳ ତାଙ୍କର ଜୀବନ । ଅନେକ ଦୁଃଶ୍ଚିନ୍ତାରେ ଭରା ।

ଅଜୟଙ୍କ ବେପରୱା ଜୀବନର ଦାୟିତ୍ୱହୀନତା, ଆର୍ଥିକ ଅଭାବବୋଧ କ'ଣ ତାଙ୍କ ମନକୁ ଏମିତି ମାଟି କରି ଦେଉଛି ଦିନକୁ ଦିନ ? ତା' ବୁଝି ପାରନ୍ତି ନାହିଁ ସେ ନିଜେ ମଧ୍ୟ । ଏମିତି କି ବାପଘରୁ ଆଣିଥିବା ଗହଣାଗାଣ୍ଠି ମଧ୍ୟ ଅଜୟ ନେଇଯାଇଛନ୍ତି । ବନ୍ଧା ପକାଇ ଯାହା ପଇସା ଆଣିଥିଲେ ତାକୁ ଉଡ଼ାଇ ଦେଇଛନ୍ତି । ଏବେ ଶୂନ୍ୟ ହସ୍ତ ସେ । ଲଙ୍ଗଳା ବେକ, କାନରେ କେଉଁଦିନୁ ବିରାଜୁଛି ତେଜହୀନ ଦୁଇଟା କାନଫୁଲ । ହାତରେ ବ୍ରୋଞ୍ଜର କାଚ । କାହାକୁ କହିବେ ସେ । ତାଙ୍କର କ'ଣ ମନହୁଏ ନାହିଁ ଭଲ ଖଣ୍ଡେ ପିନ୍ଧି, ଭଲ ଖାଇ, କେତେ ଜାଗା ବୁଲାବୁଲି କରନ୍ତେ । ଅନ୍ୟମାନଙ୍କ ପରି ! ନାଁ ମନଖୁସୀ ନ କରନ୍ତେ ? ହେଲେ କାହାକୁ କହିବେ ? କେବଳ ନୀରଳସ ଗୋଟାଏ ଆବେଗହୀନ ଜୀବନ ତା'ର ଆପଣାଛନ୍ଦରେ ଗତିଶୀଳ । ସେଥିପାଇଁ ସେ ଶୋଇଶୋଇ ବିତାନ୍ତି ସବୁତକ ସମୟ । ଘରଦ୍ୱାର ସଫା ନାହିଁ । ଲୁଗାପଟା ପ୍ରତି ଯତ୍ନ ନାହିଁ । ଭଲ ପିନ୍ଧିବାର ଆଗ୍ରହ ନାହିଁ । ଏତେ ଅମନୋଯୋଗୀ କ'ଣ ପାଇଁ ସେ ତା' ଅନ୍ୟମାନେ ବୁଝନ୍ତି ନାହିଁ । ସମସ୍ତେ ଜାଣନ୍ତି ମଣିଷର ମନରେ ସଫା ସୁତୁରା ଭାବଟିଏ ଥିଲେ ସେହି ଜାଗାଟି ଆପେଆପେ ସଫା ହୋଇଯାଏ ଏବଂ ପବିତ୍ରତା ବିରାଜମାନ କରେ । ଯେଉଁଠି ନିଜର ମନ ଅରମା, ସେ କାହାକୁ ଆଉ ଶାନ୍ତି ଦେଇପାରିବ ? ଅର୍ଥାଭାବ କ'ଣ ଏମିତି ଗୋଟାଏ କାରଣ ହୋଇପାରେ ସ୍ଥାଣୁ ଜୀବନ ପାଇଁ ? ସେ ଯାହାହେଉ ଶାନ୍ତିଙ୍କର ସାଧାରଣ ଗୋଟାଏ ନିରର୍ଥକ ହସ ଏସବୁକୁ ସମାଧାନ କରିପାରେ ନାହିଁ । ମଣିଷ ନିଜେ ନ ଚାହିଁଲେ କି କିଛି ହୋଇପାରେ !

ବରଂ ସେ ମନେ କରନ୍ତି ଏମିତି ଗୋଟାଏ ବେକାରୀ ପୁଅକୁ ବାହାହୋଇ ସେ ବୋଲି ରହିପାରିଛନ୍ତି । ଅନ୍ୟ କେହି ଝିଅ ହୋଇଥିଲେ ପଳାଇ ଯାଆନ୍ତାଣି । ମଣିଷ ଏମିତି ଭାବିପାରେ । ହେଲେ ସଂସାରର ବଂଧନ ଏତେ କ'ଣ ସହଜ, ଗୋଟାଏ କାରଣ ଦେଖାଇ ମଣିଷ ଚାଲିଯାଇପାରେ ସ୍ୱାମୀ ସନ୍ତାନଙ୍କୁ ଛାଡ଼ି ? ତାଙ୍କର ଏଇ ନିରର୍ଥକ ଯୁକ୍ତି ଘରେ ସମସ୍ତେ ଶୁଣନ୍ତି । କେହିକେହି ହସି ଦିଅନ୍ତି ।

ଗାଁରେ ରହିଲେ ବି ସାହି ପଡ଼ିଶାରେ ସେ କାହା ସାଂଗରେ ମିଶିପାରନ୍ତି ନାହିଁ । ସାଇଭାଇରେ ମାଇପେ ବସି ଗପ କରୁଥିବା ବେଳେ ସେ ନିଜକୁ ଦୂରେଇ ରଖନ୍ତି । କାହା ସାଂଗରେ ଖାପ ଖାଇବାକୁ ହେଲେ ମନର ଦ୍ୱିଧାବୋଧକୁ ଛାଡ଼ିବାକୁ ପଡ଼େ ।

ସବୁବେଳେ କେଉଁ ଅଯୋଗ୍ୟତାଟିଏ ତାଙ୍କ ଉପରେ ସବାର ହୋଇ ବସିଥାଏ । ସେଥିପାଇଁ ଶୋଇ ରହିବା ତାଙ୍କର ବଢ଼ିଯାଏ । ତା' ଦ୍ୱାରା ନିଥରତା ବଢ଼େ । କ୍ରିୟାଶୀଳ ହେଲେ ମଣିଷ ଫୁର୍ତ୍ତି ହୋଇଯାଏ । ସେଥିପାଇଁ ଘରଦ୍ୱାରର ଯତ୍ନ ମଧ୍ୟ ସେ ନିଅନ୍ତି ନାହିଁ । ମଇଳା ହୋଇ ପଡ଼ିଥାଏ କେତେ ଦିନର ପୁରୁଣା ଖାନଦାନୀ ଘର । ଜିନିଷ ପତ୍ରରେ ଭର୍ତ୍ତି । ରକ୍ଷଣା ବେକ୍ଷଣ ଜରୁରୀ ଦରକାର । ହେଲେ କାହିଁ । କିଏ କେଉଁଠି ପଡ଼ିଥାଏ । ମୂଷା ମାଟିଗାଳି ଗଦା କରିଥାଏ । ମାଟିର ଚଟାଣ ଉପରେ ସିମେଣ୍ଟର ମେଞ୍ଜିଆ ହୋଇଥାଏ । ହେଲେ ଫାଟ ଜାଗାମାନଙ୍କରେ ମୂଷାର ଉତ୍ପାତ ଲାଗିଥାଏ । ସେହି ଫାଟରେ ବୋଡ଼ା ସାପମାନ ଲୁଚି ରହିଥାନ୍ତି । ଅସରପା, ବିଛା ସୁଦୃଶ୍ୟ ସଂଖ୍ୟାରେ ଖେଳନ୍ତି । ଆଗକାଳର ଖଟ ଉପରେ ଧାନ ଓଳିଆ ଥୁଆ ହୋଇଥାଏ । ଶାଶୁଙ୍କର ଆଲମିରାଟା ମଧ୍ୟ ସେମିତି ପଡ଼ିଥାଏ ଅଯତ୍ନ ହୋଇ । ଆଦିତ୍ୟ ପ୍ରଥମେ ପ୍ରଥମେ ଚାକିରି କଲାବେଳେ ଆଲମିରାଟି ଆଣିଥିଲେ । କେଡ଼େ ପରିସ୍ଫୁଟ ତା' ଉପରର କୁଟିକମ । କେତେ ଭଲ କାରିଗର ପ୍ରାଣର ନିର୍ଯାସ ବାଢ଼ି ତିଆରି କରିପାରନ୍ତି ସେହିସବୁ ଜିନିଷ । ତା' ଦେଖିଲେ ଜଣାପଡ଼େ । ଏରସମାରେ ଚାକିରି କଲାବେଳେ ନଦୀପଥରେ ବୁହାହୋଇ ଆସିଥିଲା । ସେଦିନ କି ଖୁସୀ ଆଦିତ୍ୟଙ୍କ ବାପା, ବୋଉଙ୍କର । ସେହି ଖୁସୀ ଦିନମାନ ଏବେ ବି ଜଳଜଳ ହୋଇ ଭାସିଉଠେ ଆଦିତ୍ୟଙ୍କ ସାମନାରେ । ଅଥଚ ଘରର ବଡ଼ବୋହୂ ହୋଇ ଦୁଇଟା ମାତ୍ର ଘର ପରିଷ୍କାର ରଖିପାରନ୍ତି ନାହିଁ ଶାନ୍ତି ! ଆଲମିରା ପଛରେ ହୋଇସାରିଥାଏ ବିରାଟ ଗର୍ତ୍ତ । ବାଣୀବ୍ରତାଙ୍କର ବାହାହୋଇ ଆସିବାବେଳର କାଇଁଚ ପେଡ଼ି, ପୁରୁଣା ବହି ସବୁ ଚାଲିଯାଇଥାଏ । ମୂଷା ଗର୍ଭକୁ । ତାଙ୍କ ବୋଉର ହାତ ତିଆରି ପେଡ଼ି ଆଉ ନଥାଏ । ଥାଏ କେବଳ ଧ୍ୱସ୍ତ ବିଧ୍ୱସ୍ତ ଗୋଟାଏ ସ୍ମୃତିର ସହର । ଗାଁରେ ପଂହଚି ବାଣୀବ୍ରତା ଏସବୁ ଦେଖି ବଡ଼ ହା...ହା...କାର କହି ଉଠନ୍ତି । ବୋହୂର ଦାୟିତ୍ୱହୀନତା ଦେଖି ପାଟି ତାଙ୍କର ଆଉ ଫିଟେ ନାହିଁ ଅସହ୍ୟ ଦୁଃଖରେ । ସେ ମଥାରେ ହାତ ଦେଇ ବସିପଡ଼ନ୍ତି ଘଡ଼ିଏ । କେଉଁ ବୋହୂକୁ ସେ ଆକଟିବେ । ଦାୟିତ୍ୱର ଜ୍ଞାନ ଶୁଣାଇବେ ? ସମସ୍ତେ ମଣିଷ, ବିବେକୀ, ବିଚାରବନ୍ତ । ଏସବୁ କିଏ କାହାକୁ ଶିଖାଏ ନାହିଁ । ମଣିଷ ରହୁଥିବା ଘରଟିକୁ ନିଜର ଭାବିବା ଦରକାର । ନହେଲେ ସବୁ ତ ଏମିତି ଉଜୁଡ଼ି ଯିବ । କେଉଁ ଉତ୍ତର ଦାୟାଦ ପାଇଁ ସେ କ'ଣ ରଖିପାରିବେ ?

ସେ ନିଜକୁ ପ୍ରକୃତିସ୍ଥ କରି ନିଅନ୍ତି । ବଡ଼ ଆଶ୍ଚର୍ଯ୍ୟ ଲାଗେ ତାଙ୍କୁ । ଏଠି ମଣିଷର ରଖିବାର ମନଟିଏ ବଡ଼ ନାଁ ଆଉ କିଛି । ଏମିତି ଅଯୋଗ୍ୟତାର ନିଷ୍ଠୁର ହାତରେ ଶେଷ ହୋଇଯାଏ ପୁରୁଣା ସ୍ମୃତି । ସମୟର ପଦଚିହ୍ନ ଉପରେ ବସିଥାଏ

ବହଳ ଧୂଳିର ଆସ୍ତରଣ । ସେ ଅନ୍ଧ ଆବେଗରେ ଆଲମିରାରେ ହାତ ମାରନ୍ତି । ଆଉଁସିବା ଢ଼ଂଗରେ । ବାରମ୍ବାର ଖୋଲନ୍ତି । ବଂଦ କରନ୍ତି । ହେଲେ ସେହି କାତରତା ଭିତରେ ଭାସିଆସେ ତାଙ୍କ ବୋଉର ମୁହଁ । କେଡ଼େ ସରାଗରେ ସଜାଡ଼ିଥିଲା ସେସବୁ ପେଡ଼ି । ନାଁ.. କେଉଁଠି ଆଉ କିଛି ନାହିଁ । ଦାର୍ଢ଼ତ୍ୟା ଭକ୍ତି, ରାମାୟଣ, ମାଳିକା, ହା...ଅନ୍ନ ଏସବୁ ବହି ପାଲଟି ଯାଇଥାଏ କାଗଜ ଟୁକୁରା । ଉଡୁଥାଏ ଅସହାୟତାରେ । ସେ ବନ୍ଦ କରିଦିଅନ୍ତି ଆଲମିରାଟା ।

ସବୁକୁ ପୁନଶ୍ଚ ପଛକରି ଦେବାକୁ ପଡ଼େ । ଫେରିଆସିବାକୁ ହୁଏ କଟକ । ନିଜ ଆଖି ଆଗରେ ଏମିତି ଘଟି ଚାଲିଥାଏ । ସମୟ ଭାଂଗି ଦେଉଥିବା ସକଳ ଅତୀତ । ଦିନାକେତେ ଗୁଣୁଗୁଣୁ ହୋଇ ମନକୁ ମନ ବସି ଆଦିତ୍ୟଙ୍କ ସାମ୍ନାରେ କହି ହୁଅନ୍ତି ଉତ୍ତର ଦାୟାଦଙ୍କର କୀର୍ତ୍ତି । ହେଲେ ଆଦିତ୍ୟ କ'ଣ କହିବେ, କି ପ୍ରକାର ପ୍ରବୋଧନା ଦେବେ ତାଙ୍କୁ । ଖାଲି ସହାନଭୂତିଶୀଳତା ବ୍ୟତୀତ ଆଉ କିଛି ନଥାଏ ତାଙ୍କର । ସେ ଜାଣନ୍ତି ଏ ଏକ ଅଲଗା ପ୍ରକାରର ଦୁଃଖ । ଏ ଦୁଃଖକୁ ମଣିଷ କାହାକୁ ବା ବୁଝାଇ ପାରିବ ? ଅପାରଗ ଉତ୍ତର ଦାୟଦମାନଙ୍କୁ ବା କି ଉପଦେଶ ଦେଇ ବାଟକୁ ଆଣିହେବ ?

ଅଜୟ ତ ଘର ବଡ଼ ପୁଅ । ତା' ପ୍ରତି ତାଙ୍କର ଥାଏ ଅହେତୁକ ଭଲପାଇବା । ଏଇଟା ସ୍ୱାଭାବିକ୍ । ପିତାମାତାଙ୍କର ଜ୍ୟେଷ୍ଠ ସନ୍ତାନପାଇଁ ଅଂଧ ସ୍ନେହ । କ'ଣ ବା କହିବେ ତାକୁ ସେ । ତାଙ୍କର ପିତା ବିଶ୍ୱନାଥ ବଂଚିଥିବାବେଳେ ଜିଦ୍‌କଲେ ବଡ଼ ନାତିର ବାହାଘର ଦେଖିବେ । କି ଭୟ ତାଙ୍କ ମନରେ ଥିଲା କେଜାଣି ? ବୟସ ହୋଇଯାଉଛି, କେତେବେଳେ କେଉଁ କଥା । ସେହି ଆଶଙ୍କାରେ ହୁଏତ ମନ ଦବିଯାଇଥିଲା ତାଙ୍କର । ଜିଦ୍‌କଲେ ଅଜୟର ବାହାଘର ଦେଖିବେ । ଫାଙ୍କା ଦୃଷ୍ଟିରେ ଚାହିଁଥିବେ । କ'ଣ ଭାବୁଥିବେ ବସି ବସି । ହେଲେ ସବୁବେଳେ ଅସ୍ତବ୍ୟସ୍ତ କରିପକାଇଲେ ଅଜୟର ବାହାଘର କର । ମଣିଷ ବି କେତେ ମୋହଗ୍ରସ୍ତ ? ଗୀତାର ସାରତତ୍ତ୍ୱ ଆଜି କେତେ ପ୍ରବଚକ ବଖାଣୁଛନ୍ତି । ବଡ଼ ବଡ଼ ପଡ଼ିଆରେ ସାମିଆନା ଟାଂଗି, ମାଇକ୍ ଲଗାଇ ଲୋକମାନଙ୍କୁ ବୁଝାଉଛନ୍ତି ଆବାହମାନ କାଳଧରି ମୋହ ମୁକ୍ତିର କଥା । ନିଷ୍କାମ କର୍ମ ଏବଂ ସଂପୂର୍ଣ୍ଣ ସମର୍ପଣର କଥା । ଭଗବାନ ସ୍ୱୟଂ କୁରୁକ୍ଷେତ୍ର ଯୁଦ୍ଧରେ ଅର୍ଜୁନଙ୍କ ପରି ବିରାଟଯୋଦ୍ଧାର ମୋହଗ୍ରସ୍ତ ହୃଦୟକୁ ଗତିଶୀଳ କରିବାକୁ, କର୍ମ କରିବାକୁ ବୁଝାଇଥିଲେ । ଆଜି ବହି, କ୍ୟାସେଟ୍, ପ୍ରବଚନ ସବୁଥାଇ ବି ମଣିଷ କ'ଣ ସତରେ ମୋହମୁକ୍ତ ହୋଇ ପାରିଛି ? ବରଂ ବୃଦ୍ଧାବସ୍ଥାରେ ଆସୁଛି ଆହୁରି ମୋହ । ତା'ମଧ୍ୟ ଥିଲା ବିଶ୍ୱମୋହନଙ୍କର । ନିଜ ପୁଅଝିଅଙ୍କର ବାହାଘର ଶେଷହେବା ପରେ ମିଣଷଭାବେ ହଁ ଏଥରକ ଦାୟିତ୍ୱ ମୁକ୍ତ,

ଆର୍ଥିକ ଆବଶ୍ୟକତାଠାରୁ ମଧ ମୁକ୍ତ । କିନ୍ତୁ ତା' ହୁଏ ନାହିଁ। ପୁଣି ଆସେ ନାତି ନାତୁଣୀଙ୍କ ଜଂଜାଳ । ସେ ବଡ଼ ହେବେ । ବାହା ହେବେ । ଅଣନାତି ନାତୁଣୀ ଦେଖିବେ । କେତେ ଲମ୍ବା ସତେ ମଣିଷର କଳ୍ପନା ! ତାହା ମଧ ହୋଇଥିଲା ବିଶ୍ୱମୋହନଙ୍କ କ୍ଷେତ୍ରରେ । ବାଣୀବ୍ରତା ଆଗରୁ ଅନ୍ୟ ପରିବାରରେ ଏସବୁ ଶୁଣୁଥିଲେ । ହେଲେ ନିଜ ପରିବାରରେ ତା'ର ଗଭୀର ଅନୁଭବରେ ବିବ୍ରତ ହୋଇ ପଡ଼ିଥିଲେ । ବିଶ୍ୱମୋହନଙ୍କର କାମନା, ବାସନା ଯେ ପୂର୍ଣ୍ଣହେଉ ତା' ସେ ଚାହୁଁ ଥିଲେ ଏବଂ ତା'ସହିତ କିପରି ଅଜୟଙ୍କର ବାହାଘର ଠିକ୍ ହୋଇଯାଉ ବ୍ୟସ୍ତ ଥିଲେ ।

କେତେ ପ୍ରସ୍ତାବ ଆସିଛି ଆଉ ଯାଇଛି । ହେଲେ କ'ଣ ପାଇଁ ସ୍ରୋତସ୍ୱିନୀର ମୁହଁରେ ସାମାନ୍ୟ ପତ୍ର ପରି ଭାସି ଚାଲିଯାଏ, ତା' ବୁଝିପାରନ୍ତି ନାହିଁ ବାଣୀବ୍ରତା । ତା' କ'ଣ ଅଜୟଙ୍କର ବେକାରୀ ଜୀବନକୁ ନେଇ ? ସେ ଚମକି ପଡ଼ନ୍ତି ଏ ସବୁ ଦେଖି । ପ୍ରତ୍ୟୟ ରୁହେ ନାହିଁ ନିଜ ଉପରେ ।

କବିତା ନାମ୍ନୀ ଝିଅଟିଏ ବଂଧୁବାଂଧବରେ । ତାକୁ ଦେଖିବାକୁ ଯାଇଥିଲା ଝିଅ । ବଡ଼ ଚଂଚଳ, କଥା କହିବାରେ ପାରଂଗମ । ହସେଇ ହସେଇ ପରିବେଶକୁ ମସଗୁଲ୍‌କରି ରଖିପାରେ । କିନ୍ତୁ ବିଶ୍ୱମୋହନଙ୍କ ଯୌତୁକ ଦାବୀରେ ହେଉ କି ଅନ୍ୟ କିଛି ଯୋଗାଯୋଗର ଅଭାବ ହେଉ, ବାହାଘର ଠିକ୍ ହୋଇପାରୁନଥିଲା । ଆହୁରି ଗୋଟାଏ ଦୁଇଟା ଜାଗାରୁ ପ୍ରସ୍ତାବ ପଡ଼ିଲା ଏବଂ ଭାଂଗିଲା । ପୁଅର ଚାକିରି ନାହିଁ। କଣ୍ଟ୍ରାକ୍‌ଟ୍ରୀ କରେ । କରଣ ଘର ! ପାଠଶାଠ ପଢ଼ି ସାଧାରଣ ମତରେ ଚାକିରି କରିବା ଦରକାର । ବେପାର ଗୋଟାଏ କ'ଣ ? ନାକଟେକି ଦୂରେଇ ରୁହନ୍ତି ସେମାନେ । ଥରେ ଦୁଇ ଜଣ ସ୍ତ୍ରୀ ଲୋକ ଆସିଲେ ତାଙ୍କ ଘରକୁ । ଅଜୟଙ୍କୁ ଦେଖିବାକୁ । ପ୍ରାୟାଂଧକାର । କହିଲେ ଡାକନ୍ତୁ । ଅଗଣା ମଝିରେ ଗୋଟିଏ ଉଚ୍ଛିଷ୍ଟ ଚେୟାର ଉପରେ ସେ ବସିଲେ । ଝାପସା ଆଲୋକ ଗୋଧୂଳି ଲଗ୍ନର । ଲାଇନ୍ ନାହିଁ । ଦେଖିବା ପରେ ବାହାରକୁ ଆସିଲେ । ସେମାନଙ୍କ ଦେଖିବା ଭଂଗୀରେ ବେଖାତିର ଭାବଥିଲା ସୁସ୍ପଷ୍ଟ । କହିଲେ- ଟିକେ ଆପଣଙ୍କ ପୁଅକୁ ଆମ ଘରକୁ ପଠାଇବେ, ଅନ୍ୟମାନେ ଦେଖିବେ । ସେମାନଙ୍କ ହେୟଜ୍ଞାନ କରିବା ଏତେ ରହିଥିଲା ଯେ ଝିଅ ଦେହରେ ତା' ଲାଗିଗଲା ଚାଇଁକରି । ସେ ତତ୍‌କ୍ଷଣାତ୍ କହିଲା- ସେ ତ କୁଆଡ଼େ ଯିବାକୁ ଭଲ ପାଆନ୍ତି ନାହିଁ। ଯାହାର ଦେଖିବା କଥା, ସେମାନେ ଆସନ୍ତୁ । ପରବର୍ତ୍ତି ସମୟରେ ସେହି ପ୍ରସ୍ତାବକାରୀମାନେ ଆଉ ଦେଖା ନଥିଲେ ।

ଗୋଟାଏ ପୁରୁଷ ପାଇଁ ତା'ର ଯୋଗ୍ୟତା, ଅର୍ଥ ଉପାର୍ଜ୍ଜନାର କ୍ଷମତା, ଯେ ତା'ର ବ୍ୟକ୍ତିତ୍ୱର ଗୁରୁତ୍ୱ ବଢ଼ାଏ ତା' କେମିତି ଭାବିପାରିଲେ ନାହିଁ ଅଜୟ । ସବୁ

ପୁରୁଷ ଭିତରେ ସ୍ୱପ୍ନଥାଏ ଚାକିରି କରିବି, ଭଲଘରେ ବାହା ହେବି । ଅନ୍ତତଃ ସ୍ୱଚ୍ଛନ୍ଦର ଜୀବନଟିଏ ବିତେଇ ପାରିବି । ତା' ପରେ ଯୌତୁକର ରୋଗ ତ ସାଧାରଣ କଥା । ନିମ୍ନ ମଧ୍ୟବିତ୍ତ, ମଧ୍ୟବିତ୍ତ ପରିବାରର ପିଲାମାନେ ଭଲ ଚାକିରିଟାଏ କଲେ, ସେମାନେ ଆଉ ପାଦ ତଳକୁ ଚାହାନ୍ତି ନାହିଁ । ସେମାନଙ୍କ ଗ୍ରୀବା ଉପରକୁ ଥାଏ । ସେମାନେ ଦେଖନ୍ତି ସମାଜର ଉପର ପାହାଚର ଲୋକଙ୍କୁ । ସେମାନଙ୍କ ପ୍ରତିପତ୍ତି କ୍ଷମତାକୁ ନେଇ କେମିତି ଖେଳ ଖେଳାଯାଇପାରେ । ସେମାନେ ଭବିଷ୍ୟତରେ କେଉଁ ଉପକାରରେ ଆସିପାରିବେ ! ସେମାନେ ସେଇଠିକୁ ଉଠିବାକୁ ପ୍ରୟାସ କରନ୍ତି ।

ଝିଅ ଅର୍ପିତାର ସାଂଗ ନୀରଜ । କ୍ୟାରିଅର ସେକେଣ୍ଡ କ୍ଲାସ । ଇଂରାଜୀରେ ଚାଳିଶ ପରସେଣ୍ଟ ରଖିଥିଲା ମାଟ୍ରିକରେ । ଅଥଚ ଓ:ଏ:ଏସ୍ ପାଇଲା । ପାଇଲା ପରେ କି ଅହଂକାର । ଦେଖ ! ଆମ କ୍ଲାସରେ ମୁଁ ଏକା ଓ:ଏ:ଏସ୍: ପାଇଲି । ବ୍ୟାଙ୍କର ପି:ଓ ପାଇଲି । ଗୋଟାଏ ଗୋଟାଏ ପ୍ରାପ୍ତିରେ ମଣିଷର ମନରେ କି ଏମିତି ଅଂହକାର ଆସିଥାଏ ନାଁ ଆତ୍ମବିଶ୍ୱାସ ନାଆଁରେ ଅହଂକାରକୁ ଚାପି ଦିଆଯାଇଥାଏ ? ସେତେବେଳକୁ ଅର୍ପିତା କିଛି ପାଇନଥାଏ । ଅର୍ପିତା ସାମ୍ନାରେ ଏସବୁ କହିଲାବେଳେ ସେ ଢଳଢଳ କରି ଚାହିଁ ରୁହେ । କ୍ଲାସରେ ସବୁଠୁ ଅଧିକାନମ୍ବର ରଖିଥିବା ଝିଅଟି, ତା'ଠାରୁ ଗ୍ରାଜୁଏସନରେ, ପୋଷ୍ଟ ଗ୍ରାଜୁଏସନରେ ଅଧିକା ନମ୍ବର ରଖିଥିବା ଝିଅଟି ବୋକା ପାଲିଟିଯାଏ ଶୁଣୁଶୁଣୁ । ମଣିଷର ଅପ୍ରାପ୍ତି ହିଁ ତାକୁ ଏମିତି ନିଥର କରିଦିଏ ସିନା । ଢଳ ଢଳ କରି ଚାହିଁବା ଶିଖାଏ, କାନକୁ ବଧିରା, ଆଖିକୁ ପଥର କରିଦିଏ ।

ନୀରଜ ସମୟେ ସମୟେ ଆସେ । କହେ-ଆମ ପିଲାମାନେ କଟକ-ଭୁବନେଶ୍ୱରରେ ରହି ପଢ଼ିବେ । ଯେତିକି ବଡ଼ ଅଫିସର ସବୁ ତ ଏଇଠି ବାଛି ବାଛି ଶ୍ୱଶୁର ଘର କଲେ । ତେଣୁ ଅସୁବିଧା କ'ଣ ? ମୋର ଗୋଟାଏ ଶଳା ଡି:ଏଫ୍:ଓ, ଗୋଟାଏ ଷ୍ଟେଟବ୍ୟାଙ୍କରେ ପି:ଓ । ଶଳାର ସାଂଗ ଆଇ:ଏ:ଏସ୍ । ମୋର ଟ୍ରାନସଫର ଏଇ କଟକ, ଭୁବନେଶ୍ୱରରେ ହିଁ ହେବ । କହି ହସିହସି ଇଙ୍ଗୀତ କରିଥିଲା । ଶ୍ୱଶୁର ଘରକୁ ନେଇ କେତେ ସ୍ୱପ୍ନ, କେତେ ଅହଂକାର । ଆଉ ସେହି ଅହଂକାର ପଛରେ ଅଛି ନିଜକୁ ଗଢ଼ି ତୋଳିବାର ପ୍ରାପ୍ତି । ପ୍ରାପ୍ତି ତ ଏମିତି ଆସେନା । ଆସେ ନିରବଚ୍ଛିନ୍ନ ଅଧ୍ୟବସାୟରୁ । ଯାହାର ଯେତିକି ଷ୍ଟାଣ୍ଡାର୍ଡ଼ ସେତିକି ମିଳୁ । ଯଦି ଅଜୟଙ୍କର ଷ୍ଟାଣ୍ଡାର୍ଡ଼ ପାଠରେ ଖରାପ , କ୍ଲର୍କ ପାଇଁ ପରୀକ୍ଷା ଦେଇଥାନ୍ତେ, ହୋଇପାରିଥାନ୍ତେ ତାଙ୍କପରି ନିମ୍ନ ମଧ୍ୟବିତ୍ତ ପରିବାରର କ୍ୱାଇଁ । କିନ୍ତୁ ନାପସନ୍ଦର ଶିକାର ହୋଇ ପାରିନଥାନ୍ତେ ତ । ମଣିଷର ଅପ୍ରାପ୍ତି ତାକୁ ଛୋଟ କରିଦିଏ । ଭାଗ୍ୟ ସାମନାରେ ମଣିଷ ମୁଣ୍ଡ ଝୁଙ୍କାଏ ।

ବାଣୀବ୍ରତାଙ୍କର ହା...ହା...କାର ବଢ଼େ । କ'ଣ ଅଜୟପରି ପିଲାକୁ ଝିଅ ମିଳିବ ନାହିଁ ! ମନର କଥା ମନରେ ବାହୁନି ମରେ । ଫାଙ୍କା ଦୃଷ୍ଟି ଲମ୍ବିଯାଏ ତାଙ୍କର ହତାଶାର ଚକ୍ରବାଳ ଡେଇଁ ।

ଶ୍ୱଶୁର ବିଶ୍ୱମୋହନ ମଧ୍ୟ ଅସ୍ଥିର ସ୍ୱଭାବର । ତାଙ୍କର ବ୍ୟସ୍ତତାର ଭାର ଆହୁରି ତୀବ୍ର ମନେହୁଏ । ଛବିଶ ବର୍ଷ ଚାଲିଥାଏ ଅଜୟଙ୍କୁ । ଯେତେ ଖୋଜିଲେ ବି କ'ଣ ମିଳେ ? ନାଁ... ଚାରିଆଡ଼ ହତାଶର ସ୍ୱରରେ ବିବର୍ଣ୍ଣ ହୁଏ । ଯୋଡ଼ି ବନାଇବାର କ୍ଷମତା କାହା ହାତରେ ବା ଅଛି ? ମଣିଷ ହାତରେ ଯେ କିଛି ନାହିଁ ତା' ଚରମ ସତ୍ୟହୋଇ ଠିଆହୁଏ ସାମନାରେ । ଏଇଠି ମାନିବାକୁ ପଡ଼େ ଶାସ୍ତ୍ର, ପୁରାଣ, ଧର୍ମର ବିଶ୍ୱାସକୁ ।

ସବୁ ଦିନେ ଚୁପ୍ ହୋଇଯାଏ । ବିଶ୍ୱମୋହନ ସଂସାର ଛାଡ଼ନ୍ତି । ବାଣୀବ୍ରତା ବୁଝି ସାରିଥାନ୍ତି ତାଙ୍କ ପୁଅର ଚାହିଦା ବିବାହ ବଜାରରେ । ସେ ଆକୁଳ ହୋଇ ପଡ଼ନ୍ତି । ଛାତି ତଳ କୋରିହୋଇଯାଏ ଏ ସବୁ ଭାବି । ଶୋଇପାରନ୍ତି ନାହିଁ ରାତିରାତି । କିଏ ବାହାହେବ ଅଜୟଙ୍କୁ ? କେଉଁଠୁ ଝିଅ ମିଳିବେ ? ସେହି ଚିନ୍ତା ତାଙ୍କୁ କବଳିତ କରେ ଦିନକୁ ଦିନ । ଏବେ ଆଉ ଅଜୟର ପଇସା ରୋଜଗାର ଚିନ୍ତା କରନ୍ତି ନାହିଁ । ବରଂ ଜୀବନ ଦରକାର । ଜୀବନର ଥଇଥାନ କେତେ ଶୀଘ୍ର ହେବ ତା' ଥାଏ ଚିନ୍ତାର ବିଷୟ । ଅଜୟଙ୍କ ବ୍ୟବସାୟୀ ପାର୍ଟନର ଉମେଶ ହସେ । "ଏତିକି କଥା ତୁମର ମାଉସୀ । ତୁମ ପୁଅକୁ ଝିଅ ମିଳୁନାହାନ୍ତି । ରୁହମ ! ଆମର ବେପାର ଏମିତି ଚାଲିଲେ କାଲି ସକାଳେ କାର କିଣାହେବ ।"

ଦୁର୍ବଳ ଲୋକଙ୍କର ଅସ୍ଫାଳନ ବେଶୀ । ପାରୁ ନଥିବା ଲୋକଙ୍କର ବଡ଼ ବାହୁସ୍ଫୋଟ । କା'ର କିଣିବ କ'ଣ, ଏକଦା ଉତ୍କଟ ପଇସାର ଅଭାବ ବରଦାସ୍ତ କରିନପାରି ସେ ଚୋରିକରିନିଏ ମାତ୍ର ଦେଢ଼ଶ' ଟଙ୍କା ଅଜୟ ଦାଦାଙ୍କ ପକେଟରୁ । ବାଣୀବ୍ରତା ସରଳ ବିଶ୍ୱାସୀ । ଧର୍ମଭୀରୁ । ସେ କି ବୁଝନ୍ତି ଏତେ ବଢ଼େଇପଣ ! କିଏ ସତ, କିଏ ମିଛ କୁହେ । ସେ ସମସ୍ତଙ୍କୁ ସ୍ନେହ କରନ୍ତି । ପୁଅର ସାଙ୍ଗବୋଲି ଆଦର କରନ୍ତି, ସମ୍ମାନ ଦିଅନ୍ତି । କରିଧରି ଖାଇବାକୁ ଦିଅନ୍ତି । କାହାକୁ ଅନ୍ୟଥା ଭାବନ୍ତି ନାହିଁ । ସେଥିପାଇଁ ଘରେ ସ୍ଥାନ ଦିଅନ୍ତି । ସେ ଯେ ଅବିଶ୍ୱାସୀ ହେବ ତା କେମିତି ବା ସେ ଜାଣିବେ ?

ଦିନକୁଦିନ ସେ ସହି ପାରନ୍ତି ନାହିଁ ଅପ୍ରାପ୍ତିର କଷ୍ଟ । ଭାଙ୍ଗିପଡୁଥିବା ଆଶା ଭୂଲୁଣ୍ଠିତ ହେବାକୁ । ବୋହୂଟିଏ ଆସିଲେ ତାଙ୍କର ଆଉ ତିନୋଟି ଛୋଟ ଝିଅଙ୍କୁ ସମ୍ଭାଳିବ, ଘରର ଦାୟିତ୍ୱ ନେବ, ଏସବୁ ତ କରିପାରିବ ।

ହଠାତ୍ ଦିନେ ଅଜୟଙ୍କ ପାଇଁ ବାହାଘର ପ୍ରସ୍ତାବଟିଏ ବନ୍ଧୁବାନ୍ଧବ ଭିତରେ ଆସେ । ଆଦିତ୍ୟଙ୍କ ସହକର୍ମୀଙ୍କ ଝିଅ । ସେମାନେ ଏକାଠି ପୁରୀରେ ରହୁଥିଲେ । ଖୁବ୍ ଶାନ୍ତ, ସରଳ ଭଦ୍ର ଲୋକ ଜଣେ । ତାଙ୍କ ଝିଅ ପାଇଁ ।

ସ୍ୱର୍ଗରୁ ଅବା ଚାନ୍ଦ ଖସେ । ବାଣୀବ୍ରତା ହସି ଦିଅନ୍ତି ପରିଷ୍କାର ହସଟିଏ । ଏତେଦିନ ପରେ ପ୍ରାପ୍ତି/ଅପ୍ରାପ୍ତିର ଦୋଦୁଲ୍ୟମାନ ଓଜନର କଣ୍ଟା ସ୍ଥିର ହୋଇଯାଏ । କେତେକେତେ ଶୁଭ ଶଙ୍ଖ ଯେମିତି ବାଜିଉଠେ ଆଳତି ପ୍ରହରରେ । ସନ୍ଧ୍ୟା ଦୀପର ପ୍ରଜ୍ୱଳିତ ଆଲୋକରେ ତାଙ୍କ ମୁହଁର ରଙ୍ଗ ବଦଳିଯାଏ । ସେ ଆଖିବୁଜି ହାତ ଉଠାନ୍ତି ତୁଳସୀ ଚଉରା ମୂଳେ । ‘‘ହେ ଜଗନ୍ନାଥ ତୁମେ ଭରସା ମୋ ଛୁଆଙ୍କୁ । କେତେ ଖୋଜିଖୋଜି ମୁଁ ହାଲିଆ ହେଲିଣି । ଏତେଦିନେ ପ୍ରଭୁ ଗୁହାରି ଶୁଣିଲେ ।’’

ଅଜୟ ଝିଅ ଦେଖିବାକୁ ଭଉଣୀଙ୍କୁ ପଠାନ୍ତି । ସଭ୍ୟ, ଶିକ୍ଷିତ ଭଉଣୀ । କଟକ ସହରରେ ରୁହେ । ଯଦିଓ ଏ ବାହାଘର ଏକ ପ୍ରକାର ନିଃଶ୍ଚିତ, ତା’ ଜଣାଥାଏ । ଅର୍ପିତା ଭାବେ ଝିଅଟି ଯେତେବେଳେ ଧୀର, ସ୍ଥିର, ଭଦ୍ର ହୋଇଥିବ ବୋଲି ତା’ ବୋଉର ଦୃଢ଼ ବିଶ୍ୱାସ ଏବଂ ବାପାର ପରିଚୟ ନେଇ ପ୍ରସ୍ତାବ ପଡୁପଡୁ ସ୍ଥିର, କାହିଁକି ସେ ଏତେ କଷ୍ଟକରି ଯିବ ? କ’ଣ ପାଇଁ ବା ଯିବ ? ବୃଥା ପ୍ରହସନ କ’ଣ ପାଇଁ କରିବ ?

ତଥାପି ଅଜୟଙ୍କର ବିରକ୍ତ ପଣିଆ କାଳେ ଉତ୍ତୁରି ପଡ଼ିବ ସେଥିପାଇଁ ସେ ଯାଏ । ସାଙ୍ଗରେ ତା’ର ବନ୍ଧୁ ମୀନୁ । ବେଶୀ ଦୂର ମଧ୍ୟ ନୁହେଁ । ଭୁବନେଶ୍ୱର । ଝିଅର ମାମୁଁ ଘର । ଯେଉଁଠି ସମସ୍ତେ ତାକୁ ଚିହ୍ନନ୍ତି । ବନ୍ଧୁଘର ହେବେ । ସେଠିକୁ ଆସିଥାଏ ଝିଅ ।

ପହଞ୍ଚୁ ପହଞ୍ଚୁ ଝିଅ ନଥାଏ । କୁଆଡ଼େ ବାହାରି ଯାଇଥାନ୍ତି ସିନେମା ଦେଖି । ବସିବସି ବଡ଼ ଅଶ୍ୱସ୍ତି ଲାଗେ ତାଙ୍କୁ । ଝିଅ ଆସେ । ଉଚ୍ଚାରେ କମ୍ । ଶ୍ୟାମ ବର୍ଣ୍ଣ । ସେ କିଛି ପଚାରି ନାହିଁ କି ବୁଦ୍ଧି ବିଦ୍ୟାର ପରଖ ନେଇ ନାହିଁ । ଖାଲି ଦେଖିବା କଥା ଗୋଟାଏ ନଜର ପକାଇ ସେ ଫେରିଯିବ । ଏଣେ ଉଚ୍ଚତା କମହେତୁ ତା’ର ନାପସନ୍ଦ ଟିକେ ହୋଇଗଲାଣି । ମୀନୁ ହସାହସିକରି ତା’ର କଥାରେ ମସଗୁଲ । ଦୁଇଜଣ ଫେରି କି ମନ୍ତବ୍ୟ ଦେବେ ଘରେ ଚାହିଁଥାନ୍ତି ସମସ୍ତେ ।

ମିନୁ କାହାକୁ ଅପ୍ରଶଂସା କରେ ନାହିଁ । ବରଂ ବେଶୀଟିକେ ଟେକାଟେକି କରି କଥା କହିବା ଢଙ୍ଗ ତା’ର । ଫେରିଆସି କୁହେ ସତୁରି ପରସେଣ୍ଟ ଭଲ । ମନକୁ ପାଇଲା । ଶୀଘ୍ର ବାହାଘର ଦିନ ଠିକ୍ କରନ୍ତୁ ।

ଅର୍ପିତା କିନ୍ତୁ କଡ଼ାମାଷ୍ଟରର ଠାଣିରେ ମୁହଁ ସିରିଅସକରି ବସିଥାଏ । ବାସ୍ତବତାକୁ କଡ଼ାକଡ଼ି ପରଖି ସେ ମନ୍ତବ୍ୟ ଦିଏ । ଲୁକ୍ ଟକ୍ କରେ ନାହିଁ । ସେ କହିଲା ଉଚ୍ଚତା କମ । କ'ଣ ପାଠ ପଢ଼ା ସେ ପଚାରି ନାହିଁ । ତେଣୁ ପଚାଶ ପରସେଣ୍ଟ ଦେଲେ ଠିକ୍ ହେବ । ଆଦିତ୍ୟ ହସିହସି କହିଲେ-ସେ ମାଟ୍ରିକ ପାଶ କରିନାହିଁ ।

ଅର୍ପିତା ଚମକି ପଡ଼ିଲା । ତାଙ୍କ ଘରକୁ ଆସିବ ମାଟ୍ରିକ ପାଶ ନକରିଥିବା ଝିଅ । ଆଁଃ ?

-ତା' ହେଲେ ଥାଉ ସେଠି ବାହାଘର ହବା ଦରକାର ନାହିଁ ।

ସେ ଜାଣେ ବ୍ରାଣୀବ୍ରତା ପାଠପଢ଼ା ବୋହୂପାଇଁ ଆଗ୍ରହୀ । ମାଷ୍ଟ୍ରାଣୀଟାଏ ଖୋଜିପାଇଥିଲେ ସେ କରିଥାନ୍ତେ । ତେଣୁ ବି.ଏ ଅତନ୍ତଃ ପାଶ କରିବା କଥା । ମାଟ୍ରିକ ଫେଲ୍ ହୋଇଥିବା ଝିଅକୁ କେମିତି ବାହାଘର ହେବ ? ଚାରିଆଡ଼େ ଶିକ୍ଷାର ପ୍ରସାର ହେଲାଣି । ଯୁଗ ଅନ୍ଧାର ଭିତରେ ନାହିଁ ।

ଅର୍ପିତା ସିଧା ମନା କରିଦେଲା- ଏ ବାହାଘର ହୋଇପାରିବ ନାହିଁ । ଚାକିରି ନକରୁ ଜଣେ, ହେଲେ ଅତି କମ୍‌ରେ ଗ୍ରାଜୁଏଟ ହୋଇଥିବା ଦରକାର ।

ଆଦିତ୍ୟଙ୍କର ଆଶାର ଇମାରତ୍ ଭୁଷୁଡ଼ି ପଡ଼ିବା ସେ ଦେଖିପାରିବେ ନି । ୟା ମଧ୍ୟରେ ଚାରିବର୍ଷ କାଳ ସେ ଯେ କି ହୀନସ୍ତା ଭୋଗିଛନ୍ତି ଏ ବାହାଘର ଠିକ୍ କରିବାକୁ ତା' ସେ ଜାଣନ୍ତି । ଏକଥା କି ଝିଅକୁ ବୁଝାଇ ପାରିବେ ? ସେ ପାଠପଢ଼ାରୁ ତାଙ୍କୁ କ'ଣ ମିଳେ ? ବୋହୂ ଆସିବ, ଘରଦ୍ୱାର ଦେଖିବ, ଛୁଆଙ୍କୁ ଗଣ୍ଡେ ରୋଷେଇବାସ କରିଦେବ । ତାଙ୍କୁ ଟିକେ ସେବା ଶୁଶ୍ରୁଷା କରିବ ବୁଢ଼ା ହୋଇଗଲେ, ଚାକିରିରୁ କ'ଣ ମିଳିବ ?

ସେ ରୁକ୍ଷ କଣ୍ଠରେ କହିଲେ- ବୋହୂମୋର ଚାକିରି କରିବ ନାହିଁ ଏଠିକୁ ଆସି । ପାଠରୁ କ'ଣ ମିଳୁଛି । ଏବେ ବାହାଘର ଆଉ ଭଙ୍ଗା ହେବନି । ତା' ବାପା ମୋ ସହକର୍ମୀ । ଜମିବାଡ଼ି, ଘରଦ୍ୱାର ସବୁ ଅଛି । ଲୋକମାନେ ସରଳ, ବନ୍ଧୁଟାଏ ଭଲ ମିଳିବ । ଖାଲି ମାଟ୍ରିକ ପାଶକରି ନାହିଁବୋଲି ବାହାଘର ଭାଙ୍ଗିଦେବ । ନାଁ...ନାଁ...ତା' ହେବନି । ସେଇଠି ହିଁ ହେବ ।

ଅଗତ୍ୟା ଚୁପ୍ ହୋଇଗଲା ଅର୍ପିତା । ତାକୁ ଇନ୍ଧନ ଯୋଗାଇବାକୁ ମିନୁ କହିଲା- ହଁ ତ । ମଉସା ଯାହା କହୁଛନ୍ତି ସତ । ବୋହୂ କ'ଣ ଆସି ଚାକିରି କରୁଛି ? ଘର ସମ୍ଭାଳିବା କଥା ।

ଶାନ୍ତି ଆସିଲେ ଘରର ବୋହୂହୋଇ । ଆସିବା ଦିନୁ ମାନ୍ଦା ସ୍ୱଭାବର । ଶୋଇ ରହିବାରେ ହିଁ ତାଙ୍କର ସମୟ ବେଶୀ କଟେ । ଘରଦ୍ୱାର ପ୍ରତି ଯତ୍ନଶୀଳ ନୁହଁନ୍ତି । ଏମିତିକି ନିଜର ଲୁଗାପଟା ପ୍ରତି । କହିଲେ ମଧ୍ୟ ଗ୍ରହଣ କରନ୍ତି ନାହିଁ । ଯେମିତି କି ନିରର୍ଥକ କଥା ଗୁଡ଼ାଏ ତାଙ୍କୁ ଶୁଣାଉଛନ୍ତି । ଉପଦେଶ ଦେଉଛନ୍ତି ।

ଏଗାର ବର୍ଷର ବୋହୂ ହେଲେଣି । ପୁରୁଣା ହେଲେଣି । ସେସବୁକୁ ସାଇତି ସଂପାତି ରଖିବାକଥା । ଦୃଷ୍ଟିଦେବାକଥା । ପରିଷ୍କାର ପରିଚ୍ଛନ୍ନ, ରୁଚିଶୀଳ ହେବାକଥା । ଅଥଚ ବାଣୀବ୍ରତାଙ୍କର ଦୃଷ୍ଟିଭଙ୍ଗୀରେ ଏସବୁ ପରିପ୍ରକାଶ ହୁଏ । ସେ ପାରନ୍ତି ନାହିଁ ବୟସ ଦୃଷ୍ଟିରୁ । ବାରଣ୍ଡା ଉପରୁ ନାତୁଣୀ ଜନ୍ମବେଳେ ଦଉଡ଼ାଟାରେ ଝୁଣ୍ଟି ପଡ଼ିଥିଲେ । ଅଷ୍ଟାର ଲୁମ୍ବର-୧୨ରେ ମାଡ଼ ହୋଇଯାଇଛି । ନଇଁବା କଥା ନୁହଁ । ଭାରି ଜିନିଷ ଉଠାଇବା କଥା ନୁହଁ । ଅଥଚ ବାରଣ ନମାନି ନଇଁକି ଅନେକ କାମ କରୁଛନ୍ତି । ମନାକଲେ ଶୁଣନ୍ତି ନାହିଁ । କୁହନ୍ତି-କିଏ ଅଛି ଯେ କରିବ ! ପ୍ରକୃତ ପକ୍ଷରେ ରୋଷେଇଘରେ ସାରାଦିନ ଯାଏ ତାଙ୍କର । ସକାଳୁ ଉଠି ନସରପସର ହୋଇ ଚାଲିଥାଏ କାମ । ହାତ ଆଙ୍ଗୁଠି ସନ୍ଧିରେ ଫନ୍‌ଗାଲ ଇନ୍‌ଫେକ୍‌ସନ ଲାଗି ରହି ଧଳାଦିଶେ ଚମଡ଼ା । କିନ୍ତୁ କିଏ ସାହା ହେବ । ତାଙ୍କ ଓଜନକୁ ହାଲକା କରିବ ? ତା' ହୁଏନି । କାମ କରୁକରୁ ହାତ ଭରାଦେଇ ଠିଆ ହୋଇପଡ଼ନ୍ତି ଡାଇନିଂ ଟେବୁଲ ଉପରେ । ସେ କରିବେ, ନହେଲେ ଆଦିତ୍ୟ । ଅନ୍ୟ କେହି ନୁହଁନ୍ତି । ଶାନ୍ତି ତ ଅଳ୍ପ ସମୟର ଅତିଥି । କାଲି ସକାଳେ ଗାଁକୁ ଚାଲିଯିବ । ପଡ଼ିଶାଘର ବୋହୂଟିର ବକ୍ତବ୍ୟ ଶୁଣି ମଧ୍ୟ ସେ ଚୁପ୍ ରହିଲେ ।

ଶାନ୍ତିକୁ କହିଲେ-ଭଲ ଶାଢ଼ୀଟାଏ ପିନ୍ଧୁନୁ । ବାରପ୍ରକାର ଲୋକ ଆସୁଛନ୍ତି ଘରକୁ । ଟିକେ ପରିଚ୍ଛନ ରହ ।

ଶାନ୍ତି ମୁହଁ ଭାରିକରିଦେଲା-କେଇଟା ଶାଢ଼ୀ ଅଛି ଯେ ! ତୁମ ପୁଅ କିଣିକି ଦେଉଛନ୍ତି କି ?

ବାଣୀବ୍ରତା ଅଗତ୍ୟା ଚୁପ୍ ରହିଲେ-ତାଙ୍କ ଛାତିତଳକୁ ତୀରଟାଏ ଫୋପାଡ଼ିଦେଲେ ଶାନ୍ତି । କଥା କଥାକେ ନିରର୍ଥକ ଉତ୍ତର । ଏମିତି କ'ଣ ଭିଖାରି ହୋଇଛି ନାଁ ଦାଣ୍ଡରେ ବସିଛି ଯେ ପିନ୍ଧିବାକୁ ପାଉନି । ଆଣ୍ଟୁଆ ଯୁକ୍ତି । କଥାରେ କଥା ପକାଇଲେ ନିଜର ମର୍ଯ୍ୟାଦା ଯିବ । ସେ ସ୍ନେହୀ, ଦରଦୀ ମା'ଟିଏ । ମଣିଷର ମନ, ହୃଦୟକୁ ବୁଝିପାରନ୍ତି । ଏଣୁତେଣୁ ଲଗେଇ କଳିକରିବାପରି ଶାଶୁ ନୁହଁନ୍ତି । ଆପଣା ମର୍ଯ୍ୟାଦା ରଖିଥାନ୍ତି ସତର୍କ ଦୃଷ୍ଟିରେ ।

ସେ ମନେମନେ କହିହେଲେ-ଆଦିତ୍ୟଙ୍କୁ କହି ସବୁବେଳେ ତ ରଜରେ, କୁମାର ପୂର୍ଣ୍ଣିମାରେ ଲୁଗା ପଠାଉଛନ୍ତି । ବୋହୂଟା ପାଞ୍ଚ ଲୋକ ସାଙ୍ଗେ ଚଳୁଛି । କାଳେ ମନ 'ଉଣା କରିବ, ସେଥିପାଇଁ ସେ ସଜାଗ । କ'ଣ ବା ନ ଦେଇଛନ୍ତି । ପୁନଶ୍ଚ ଏ ପ୍ରକାର ଆରୋପ ! ପୁଅର ରୋଜଗାର ନାହିଁ । ସେ ଦେବବୋଲି କେଉଁ ଭରସା ଅଛି ?

ବାଣୀବ୍ରତା ରୋଷେଇଘର ଧୂଆ ଧୂଇ କରି ଅଇଁଠା ବାସନ ଯେତେ ପାଇପ୍ ପାଖକୁ କାଢ଼ି ଦେଲେ । ସାନପୁଅ ଖାଇସାରି କୁଆଡ଼େ ବାହାରି ଗଲାଣି । ଶାନ୍ତି ଖାଇସାରି ଶୋଇବାକୁ ଗଲେ । ତାଙ୍କୁ ଖରାବେଳେ ନିଦ ହୁଏନାହିଁ । ସେ କାମ ସାରି ଟିକେ ପେପର ଦେଖିବେ । ଆଦିତ୍ୟଙ୍କ ଆସିବା ରାସ୍ତାକୁ ଚାହିଁ ରହିବେ । ଏ ବୟସରେ ସାଇକେଲ ପେଲି ଏତେ ଦୂର ଯାଉଛନ୍ତି ପୁଣି ଆଖିରେ ପରଳ ମାଡ଼ି ଗଲାଣି । ଟଙ୍କା ପାଞ୍ଚ ହଜାର ହାତରେ ଧରିଲେ ଅପରେସନ୍ ହେବେ । ପେନ୍‌ସନ୍ ଅଠରଶହ ଟଙ୍କାରେ କେଉଁ ଚଳୁଛି । ପିଲାମାନେ ଯିଏ ଯାହା ରାସ୍ତାରେ ଚାଲିଛନ୍ତି । କେହିଦିନେ ପଚାରି ନାହାନ୍ତି ବାପା-ପଇସା କେତେ ଲାଗିବ ଅପରେସନରେ । ହଁ-ନିଅନ୍ତୁ ।

ଆଦିତ୍ୟଙ୍କର ସ୍ୱାଭିମାନ ପ୍ରଚଣ୍ଡ । ଉପରକୁ ନରମ । ଏ ବିଷୟରେ ସେ ଆଲୋଚନା କରନ୍ତି । ଆଖିକୁ ଦେଖାଯାଉନାହିଁ ଆଉ । ପେପର ପଢ଼ିବା କଷ୍ଟ ହେଉଛି ଗୋଟିଏ ପଟରେ । ଅଥଚ ପଇସା କେବେହେଲେ ମାଗିବେ ନାହିଁ । ଯେଉଁଦିନ ଧାର ଉଧାର କରି ଅପରେସନ କରିବାକୁ ଅପେକ୍ଷା କରିବେ ପଛେ ହାତ ପତାଇବେ ନାହିଁ । ତାହା ଜାଣନ୍ତି ବାଣୀବ୍ରତା ।

ବାଣୀବ୍ରତା ମାତୃ ହୃଦୟ । ସ୍ନେହରେ ଭରା । ତାଙ୍କର ହୃଦୟ ସମୟେ ସମୟେ ଆର୍ଦ୍ର ହୋଇଆସେ । କ'ଣ ଟିକେ ଦରକାର ହେଲେ ପୂଜାଉଜା ପାଇଁ ସେ ପାଞ୍ଚ, ଦଶ ଟଙ୍କା ଝିଅକୁ ମାଗନ୍ତି । କାମ ଚଳାଇ ଦିଅନ୍ତି । ହେଲେ ଆଦିତ୍ୟଙ୍କୁ କେବେ ଉପଦେଶ ଦିଅନ୍ତି ନାହିଁ, ହଁ ନିଜ ପୁଅ ଝିଅ ତ ମାଗିଲେ କ'ଣ ବା କ୍ଷତି ହୋଇଯିବ ! ଆଦିତ୍ୟ ଚାହାନ୍ତି ପିଲାମାନେ ନିଜେ ଶିଖନ୍ତୁ କର୍ତ୍ତବ୍ୟବୋଧ ବାପା, ମା'ଙ୍କ ପାଇଁ । ନିଜେ ଅନୁଭବ କରନ୍ତୁ । କାହିଁକି ସେ କହିବେ । ହେଲେ ପଇସାଟିଏ ପାଇଁ ସମସ୍ତେ ସଂଘର୍ଷ କରିଚାଲନ୍ତି । କାହାକୁ କେତେବେଳେ ଅଣ୍ଟେନାହିଁ କି କେହି ପଚାରନ୍ତି ନାହିଁ ।

ବାଣୀବ୍ରତା ଆଦିତ୍ୟଙ୍କୁ ଅପେକ୍ଷା କରୁଥିଲେ । ଗେଟ୍ ଖୋଲା ହେବାର ଶବ୍ଦ ଶୁଣି ବାହାରକୁ ଆସିଲେ । ଦେଖିଲେ ଅଜୟ ଆସୁଛି । ଖାଲି ହାତରେ । ଖାଲି ହାତ ଦେଖି ମୁହଁଟି ତାଙ୍କର ସାମାନ୍ୟ ସଙ୍କୁଚିତ ହୋଇଗଲେ ବି ଖୁସୀର ଭାବଟିଏ ଉଚ୍ଛୁଳି ଉଠିଲା ପୁଅକୁ ଦେଖି !

କହିଲେ- ଏମିତି ଖାଲି ହାତରେ । ଚୁଡ଼ା, ଚାଉଳ ଏସବୁ କାହିଁ ?

— ମୁଁ ତ ଇଆଡ଼େ ଗୋଟାଏ ର୍‍ୟାଲିରେ ଭୁବନେଶ୍ୱର ଆସିଥିଲି ।

— ବାପା କ'ଣ ମଙ୍ଗୁଛନ୍ତି ଏ ସୁଜି, ଉପମା ଖାଇବାକୁ । ଚୁଡ଼ା ଭଲ ତ ସେ ଭଲ । ଆସିଲେ ଖୋଜିବେ । ଚାଉଳ ବି ସରିଗଲାଣି । ଘର କେମିତି ଚଳିବ ?

ଅଜୟ ପାଦ ରଖୁ ରଖୁ ସେହି ଘର ଚଳାଇବାର ଘଷରା କ୍ୟାସେଟ ଶୁଣନ୍ତି । ଶୁଣିବାମାତ୍ରେ ମୁହଁଟା ତାଙ୍କର ଆହୁରି ବିବର୍ଣ୍ଣ, ଆହୁରି ଧୂସର ପାଲିଟି ଯାଏ । ତା' ଲକ୍ଷ୍ୟ କଲେ ବାଣୀବ୍ରତା । ସାଙ୍ଗେ ସାଙ୍ଗେ ଅଜୟଙ୍କ ପ୍ରତିକ୍ରିୟା,

— ଗାଁରେ କେହି ମଜୁରୀ ମିଳୁ ନାହାନ୍ତି । ଧାନ ଗଣ୍ଡାଏ ଉଷେଇ ଚାଉଳ ତିଆରି କରିବାକୁ । ଚୁଡ଼ା ତ କରିନି । ଶାନ୍ତି ଇଆଡ଼େ । ସେ ଥିଲେ କାହାକୁ ଡାକି ହେଲେ କାମଟା କରିଥାନ୍ତା ।

ବାଣବ୍ରତା ନୀରବ ରହିଲେ । ପ୍ରକୃତ ପକ୍ଷରେ ଘର ପ୍ରତି ଆଦୌ ମନଯୋଗୀ ନୁହଁନ୍ତି ଅଜୟ । କେଉଁଠୁ ରାଜନେତା, ଟାଉଟର ପଂଝାଙ୍କ ସାଂଗରେ ବୁଲୁଥିବ ଘର ଛାଡ଼ି । ଘରେ ଥିଲେ ସିନା ସମସ୍ୟାମାନଙ୍କ ମୁହାଁମୁହିଁ ହେବ କି ମୁଣ୍ଡରେ କ'ଣ ପଶିବ । ସମସ୍ୟାମାନଙ୍କୁ ଆଡ଼େଇ ଦେବାପାଇଁ ରାତିଦିନ ଘରଛାଡ଼ି ବୁଲିଲେ କ'ଣ କାମ ହେବ ? ସେ ଏ ବିଷୟ ଉପସ୍ଥାପନା କରିପାରିଲେନି ।

ଅଜୟ କିନ୍ତୁ ଉପରକୁ ବଡ଼ ଠୋସରେ ଏ ସବୁ କୁହନ୍ତି । ସତେ ଅବା ସମସ୍ୟାଗୁଡ଼ାକ ବଡ଼ ଗୁରୁତର ଆଉ ସେ ପାରିଲେନି ।

କଥା ହେଉହେଉ ପଂହଚିଲେ ଆଦିତ୍ୟ । ପୁଅକୁ ଦେଖି ଖୁସୀରେ ଝଲସି ଉଠିଲା ତାଙ୍କର ଆଖି ।



# (୬)

ଅଜୟ ଖାଲି ହାତରେ ଗାଁରୁ ଆସିଛନ୍ତି । ବାଣୀବ୍ରତାଙ୍କର ମନାମରା ଭାବଟିଏ ଭିତରେ ଭିତରେ ଚପିଯାଉଛି । ତଥାପି ଉପାୟ ନାହିଁ । କାହାକୁ କ'ଣ କହିହେବ ଯଦି ଦାୟିତ୍ୱକୁ ମଣିଷ ନିଜେ ନ ବୁଝେ ? ସେ ପରିସ୍ଥିତିକୁ ସମ୍ଭାଳି ନେଲେ ଏବଂ ରୋଷେଇଘରକୁ ଗଲେ । ଜଳଖିଆ ତିଆରି କରି ଆଦିତ୍ୟଙ୍କୁ, ଅଜୟଙ୍କୁ ଦେଲେ । ଅଜୟ ଚିରକାଳ ଚୁପ୍‌ଚାପ୍ । ଘରର ଭଲମନ୍ଦରେ ପାଟି ଫିଟାଇବାକୁ ପସନ୍ଦ କରନ୍ତି ନାହିଁ । ସେଇଟା ତାଙ୍କର ଦାୟିତ୍ୱହୀନତାର ଲକ୍ଷଣ । ଯିଏ ମୁଣ୍ଡ ପୁରାଏ ସମସ୍ୟାରେ ସେ କିଛି ଭାବେ, ତା'ର ଉପାୟ ଖୋଜେ ସମାଧାନର । ସେ ତ ଜୀବନର ଦାୟଠାରୁ ପଳାତକ, ସେ କି କର୍ତ୍ତବ୍ୟ ନିଜର ରଖିବେ । ତେଣୁ ସତ୍ୟର ସାମ୍‌ନା ସାମ୍‌ନି ହେବାକୁ ସେ ଭୟ କରନ୍ତି ବା ପଳାତକର ଭୂମିକାରେ ଠିଆ ହୋଇଥାନ୍ତି । କିଛି ଗୋଟାଏ ତାଙ୍କ ଭିତରେ ରହିଥାଏ । ଯାହାକୁ ସେ ଆବୋରି ଧରିଥାନ୍ତି । ସହଜ ହୋଇ ପାରନ୍ତି ନାହିଁ ପରିବାର ସହ । କିନ୍ତୁ, ବାପା, ମା'ଙ୍କର ଅବାରିତ ସ୍ନେହର ଅଂଧ ଆବେଗ ତାଙ୍କ ପ୍ରତିଥାଏ । ତା' ଯେ କେହି ବୁଝନ୍ତି । ଦୋଷାରୋପ ମଧ୍ୟ କରନ୍ତି । ହେଲେ ଆଦିତ୍ୟ ନିଜେ ବୁଝନ୍ତି ତାଙ୍କର ଅସହାୟ ପଣିଆ । ଅପାରଗ ମୁରବୀତ୍ୱ ବୋଲି ତାଙ୍କୁ ଆକ୍ଷେପ ହୁଏ । କାହାକୁ ମଣିଷ ବୁଝାଇବ ? କେମିତି ବୁଝେଇହେବ ନିଜେ ନିଜର ଗନ୍ତବ୍ୟପଥ ଯଦି ଠିକ୍ ନରଖେ ଜଣେ ? ବଡ଼ ହିସାବରେ କେହି ଜଣେ ଗାଇଡ୍ କରିପାରିବ ହଁ- ଏଇ ବାଟରେ ଯା' । ଯଦି ସେ ନ ଯାଏ, ତା' ହେଲେ ସେ ନୀରବ ରହିବ ସିନା, କରିପାରିବ କ'ଣ ?

ତୁ ତ ମଧ୍ୟବିତ୍ତ ପିତାର ବଡ଼ ପୁଅ । ତୋ ଉପରେ ପିତାମାତାଙ୍କର କେତେ ଆଶା, କେତେ ସ୍ୱପ୍ନ । ତାଙ୍କର ଦାୟକୁ ହାଲକା କରିବୁ । ଅଥଚ ସେ କ'ଣ କଲେ ? ଛାତ୍ରାବସ୍ଥାରୁ କଲେଜ ରାଜନୀତିରେ ପଶିବା ଦରକାର ବା କ'ଣ ଥିଲା । ପୁଣି ରାଜନୀତିର ସେହି ଗୁଣ୍ଡାମି, ହୁଣ୍ଡାମି ଭିତରେ । ଅଂସଖ୍ୟ ସାଂଗମାନଙ୍କ ଭିତରେ ଘୂରି ବୁଲିବାକୁ କିଏ କହିଥିଲା ? କିଏ କହିଥିଲା ପାଠପଢ଼ାରେ ମନ ନଦେଇ ବୁଲି ବୁଲି ରାତି ଅଧରେ ଘରକୁ ଫେରିବା ।

ବି:ଏସ:ସି ପଢ଼ିବା ଦିନୁ ରାଜନୀତିର ଝୁଙ୍କରେ ଜୀବନଠାରୁ ଦୂରେଇଯିବା କ’ଣ ଆଦିତ୍ୟ ତାଙ୍କଠାରୁ ଚାହିଁଥିଲେ । ଆଦୌ ନୁହେଁ । ବାଣୀବ୍ରତା ଚାହିଁଥିଲେ ଗ୍ରାଜୁଏସନ ପରେ ସେ ଲ’ ପଢ଼ନ୍ତୁ, ନହେଲେ ପୋଷ୍ଟଗ୍ରାଜୁଏସନ କରନ୍ତୁ । ଏକୋଇଶବର୍ଷ ବୟସରୁ ଘରେ ବସି କ’ଣ କରିବେ ? ହେଲେ ବିଚିତ୍ର ସବୁ ମଣିଷର ମନ ଆଉ ତା’ର ଗତି । କୁଆଡ଼େ ଟାଣିହୋଇଯିବ ତା’ କେହି ଜାଣେନା ।

ଅଜୟ ମନରେ କି ଭାବନା/ଦୁର୍ଭାବନା କେହି ଜାଣିପାରନ୍ତି ନାହିଁ । ଛିଦ୍‌କଲା ଭାବନୀପାଟଣା ଯିବ । ମାମୁଁ ଝିଅ ଭଉଣୀ ଅଛି । ବୁଲାବୁଲି କରି ଫେରିବ । ଆଦିତ୍ୟ ମଧ୍ୟ ପଚାରି ନାହାନ୍ତି ତା’ର ଆଗାମୀ ଯୋଜନା ବିଷୟରେ । କ’ଣ ପଢ଼ିବେ କି ଚାକିରି କରିବେ । ଯିଏ ଯାହା କରୁଛି କରୁ । ଅଟକାଇ ଲାଭ ବା କ’ଣ ହେବ ? ସେ କାହାର ଦାୟିତ୍ୱ ନେବେ ? କେବଳ ତେଲ ଲୁଣର ପ୍ରତିଦିନର ସଂସାର ଟାଣୁଟାଣୁ ତାଙ୍କର ସମୟ ଓ ସାମର୍ଥ୍ୟ ଆଗକୁ ଚାଲିଥାଏ । ବାଣୀବ୍ରତା ଗୁଁ ଗାଁ ହୋଇ ପ୍ରତିକ୍ରିୟା ପ୍ରକାଶ କଲେ ବି ଭାବପ୍ରବଣତାକୁ ମୂର୍ତ୍ତ କରିପାରନ୍ତି ନାହିଁ ବାସ୍ତବତାରେ । ସେ ବି କେଉଁ ଅଟକାଇ ପାରନ୍ତି ଅଜୟଙ୍କୁ ଦିନରାତି ସାଂଗସାଥୀ ହୋଇ ବୁଲିବାକୁ ନାଁ ପଚାରି ପାରନ୍ତି କାହିଁକି ଯାଉଛି ବୋଲି ।

ଅଜୟ କିଛିଦିନ ସେଠି ରହି ଫେରି ଆସନ୍ତି । ସାଂଗରେ ଆଣିଥାନ୍ତି ଲାଇସେନ୍‌ସ କଣ୍ଟ୍ରାକ୍‌ଟ୍ରୀ କରିବାର । ଭିଣେଇ ଥା’ନ୍ତି ସେଠି ଜୁନିଅର ଇଂଜିନିଅର । ଯିଏ ଯେଉଁ ଲାଇନର ସେ ସେହି ଉପଦେଶ ଦେବ । ଯେମିତି ମଣିଷଟିଏ ତୁମର ହାବୁଡ଼େ ପଡ଼ିବ,ତା’ର ମନସ୍ତତ୍ୱ ଅନୁସାରେ ସେ କଥା କହିବ । ମାର୍ଗ ଦେଖାଇବ । ଚନ୍ଦନ ବଣକୁ ଲାଗି ଅନ୍ୟଗଛ ଥିଲେ ସେ ମଧ୍ୟ ସୁଗନ୍ଧିତ ହେବ । ସାଧୁ ସଛର ସଂଗ ଲାଭ କରି ମଣିଷ ସେହି ଅନୁସାରେ ଭଲ ମଣିଷଟିଏ ହେବ । ଏହା ପରୀକ୍ଷିତ । କିନ୍ତୁ ଯାଉଥିବା ମଣିଷଟି ସଦ୍‌ରାସ୍ତାକୁ ଚିହ୍ନି ପାରିବା ଦରକାର ।

ଜୁନିଅର ଇଂଜିନଅରଙ୍କର ଆଖିରେ ଅଜସ୍ର ପଇସାର ମୋହ । ରାତାରାତି ବଡ଼ଲୋକ ହେବାର ସ୍ୱପ୍ନ । ଲଇସେନ୍‌ସଟିଏ ଅଜୟ ବାହାର କରିଦେଲେ କାମ ଧରିପାରିବେ ଏବଂ ରାତାରାତି ବଡ଼ ଲୋକ ହୋଇଯିବେ । ଅଜସ୍ର ପଇସା ହାତକୁ ଆସିଲେ ରାଜନୀତିର ସବୁଜ ଇଲାକାକୁ ଓହ୍ଲାଇ ଆସିବାକୁ ତାଙ୍କୁ ଅନାୟସ ହେବ । ଏହା ଥିଲା ତାଙ୍କର ବକ୍ତବ୍ୟ । ପଇସା ନଥିଲେ ଫଟା କଉଡ଼ିରେ କି ରାଜନୀତି କରିବ ସେ ? ମନ୍ତ୍ରୀ ପଦ ପାଇବେ । କି ଏମ:ଏଲ:ଏ ଟାଏ ହେବେ ? କି ବ୍ଲକର

ଚେୟାରମ୍ୟାନଟାଏ ବି । ଭିଣେଇର ଉତ୍ତୁଂଗ ଶିଖରୀ ମାର୍ଗଦର୍ଶନକୁ ବୋଧ ହୁଏ ଅଜୟଙ୍କର ପ୍ରଚ୍ଛନ୍ନ ଇଚ୍ଛା ସମ୍ମତି ଜଣାଇଥିଲା । ନହେଲେ କାହିଁକି ସେ ସେଠିକୁ ଯାଇ ଲାଇସେନ୍‌ସ କରି ବ୍ୟାବସାୟ କରିବା କଥା ଚିନ୍ତା କଲେ ? କାହିଁକି ଗ୍ରହଣ କରିନେଲେ ସେହି ମାର୍ଗରେ ସେ ପରିଚାଳିତ ହେବେ ? ନିଃଷ୍ଟୟ ତାଙ୍କ ଭିତରେ ଇଚ୍ଛାଟି ରହିଥିଲା ।

ସେହି ଖୁସୀରେ ମସଗୁଲ୍‌ହୋଇ ଲଗାମଛଡ଼ା ଜୀବନଟିଏ ବିତାନ୍ତି, ବାଣୀବ୍ରତା ମୁଣ୍ଡରେ ହାତ ଦେଇଦେଲେ । ବାପର ପଇସା ନଥିଲା ବୋଲି ହାର ବଂଧା ପକାଇ ଦୁଇଶହ ଟଂକା ଦେଇଥିଲେ ଲ' କଲେଜରେ ନାଆଁ ଲେଖାଇବାକୁ । ଲ'ରେ ନାଆଁ ଲେଖାହେଲା । ଅଥଚ ପାଠଶାଠ ନାହିଁ, ଭବାନୀପାଟଣା ଯାଇ ବେପାର କରିବାର ଲାଇସେନ୍‌ସ୍ ନେଇ ଆସିଛୁ ? ତା'ପରେ ରାଜନୀତି କରିବ କହୁଛି କଣ୍ଟାକ୍ଟିରେ ଟିକେ ଦମ୍ଭ ହୋଇଗଲେ । ମା'ର ହୃଦୟ ତାଙ୍କର ବାହୁନି ଉଠେ । ସେ ଗାରୁଗାରୁ ହୋଇ ଆଦିତ୍ୟଙ୍କ ଉପରେ ମନର ସାଧ ମେଣ୍ଟାନ୍ତି । ଅଥଚ ନିରୁପାୟ ।

ଅଜୟଙ୍କର ରାଜନୀତି କରିବାର ସ୍ୱପ୍ନ ବଡ଼ ଅମୂଳକ । ଭଲ ରାଜନୀତିଜ୍ଞଟିଏ ହେବାକୁ ହେଲେ ମଣିଷର ମେଧା/ବୁଦ୍ଧି, ଭଲ ବକ୍ତୃତା ମଧ ଦେଇପାରିବା ଦରକାର । ଇତିହାସର ପୃଷ୍ଠାରେ ଯେଉଁ ରାଜନୀତିଜ୍ଞମାନେ ଆସିଛନ୍ତି ସମସ୍ତେ ଭଲ ବକ୍ତା । ତା'ପରେ ଦରକାର ହୁଏ ସାଂଗଠନିକ କ୍ଷମତା । ସେମିତି ଗୋଟାଏ ବକ୍ତା କ'ଣ ଅଜୟ ହୋଇପାରିବେ ? ମାଟ୍ରିକ ପରୀକ୍ଷାର ତୃତୀୟ ଶ୍ରେଣୀରେ ପାଶ କରିବାର ଆଶାନେଇ ଯିଏ ବହି ମୁଖସ୍ଥ କରୁଥିଲେ ଆଉ ଅଚାନକ ସେକେଣ୍ଡ ଡିଭିଜନ ପାଇଥିଲେ , ତାଙ୍କ ଭିତରେ କି ମେଧା ଥାଇପାରେ ? ତାଙ୍କ ଭିତରେ କ'ଣ ଥିଲା ଗୋଟାଏ ଅର୍ନ୍ତନିହିତ ଅଗ୍ନିର ସ୍ଫୁଲିଂଗଟିଏ, ଯାହାର ତେଜରେ ଆଲୋକିତ ହୋଇଯିବ ପୃଥିବୀର ସାମାନ୍ୟତମ ଅଂଶ ? ତାଙ୍କ ଭିତରେ କ'ଣ ରହିଛି ବଳିଦାନର ପ୍ରବୃତ୍ତି ଯିଏ ନିଜକୁ ହଜାଇ ଦେଇପାରିବ ଦେଶ ମାତୃକା ପାଇଁ ? ଗୋଟାଏ ମେଧାହୀନ ବ୍ୟକ୍ତିତ୍ୱର ଟାଣପଣ କେତେ ଯେ ଆଗରେ ଚାଲିବ ଜାତି ପାଇଁ ? ହେଉ ବି ଗୋଟାଏ ଅଂଚଳ ପାଇଁ ?

ହଁ କେହି ଭାବିପାରନ୍ତି ସେ ସବୁର ଆବଶ୍ୟକତା କ'ଣ ? ଆଜିର ରାଜନୀତି ଯେଉଁଠି ପଇସାରେ ଚାଲେ, ଦଶଟଂକାରେ ଭୋଟ କିଣା ହୁଏ । ଅଶିକ୍ଷିତ ଲୋକଙ୍କ ଭିତରେ ଖୁନ୍ଦି ଦିଆ ହୁଏ ଗୋଟାଏ ଦଳ ପ୍ରତି ଅବୁଝା ଘୃଣା, ବ୍ୟକ୍ତିଗତ

ଫାଇଦା ନ ହାସଲ କରୁଥିବା କିଛିଟା ଘଟଣା । ସେ ବି ଭଳିଯା'ନ୍ତି । ରାଜନୀତିର ଗୋଟାଏ ଅତିବଡ଼ ଯୋଦ୍ଧା ବୋଲି ଭାବିନିଏ ମୁହୂର୍ତ୍ତଟିଏ, ଷ୍ଟାମ୍ପ ମାରେ ଶିଖାଯାଇଥିବା ଭୋଟ ପେପରର ଚିତ୍ରରେ । ଏମିତି ଗୋଟାଏ ଗଣତନ୍ତ୍ର ଦେଶ । ଏତେ ବଡ଼ ବିରାଟ ଦେଶର ଦାୟାଦ । ଆଜି ଶିକ୍ଷା ଯେଉଁଠି ପୂର୍ଣ୍ଣ ଶହେଭାଗ ମଣିଷ ପାଇନାହାନ୍ତି, ନିଜ ଦେଶର ଶିକ୍ଷାର ମୂଳଦୁଆ ଯେଉଁଠି କ୍ଷୀଣ, ସେଠି ଗଣତନ୍ତ୍ର ତିଷ୍ଠିବା ଆଉ ଭୋଟ କିଣାହେବା ଗୋଟାଏ ବେପାର ହୋଇଯାଏ । ସେଭଳି ଦେଶରେ ଆଜିର ରାଜନୀତିଜ୍ଞଙ୍କର ବାହୁବଳ, ଟଂକାବଳ ଦରକାର ବୋଲି ଯେଉଁମାନେ ବୁଝିଥାନ୍ତି, ତା' ମଧ୍ୟ ନିରର୍ଥକ । ପ୍ରହସନ । ସବୁ ପାଇଁ ଦରକାର ମେଧା । ଆଉ ଟଂକାବଳ, ବାହୁବଳର ପରିଚାଳନା ମଧ୍ୟ ଅନେକ ମେଧାର ଅପେକ୍ଷା ରଖେ । ନହେଲେ ମଧ୍ୟ ଡୁବିଯିବାକୁ ହୁଏ । କେଉଁଟା ତାଙ୍କର ଥିଲା ?

ହଁ... ପିଲା ଦିନେ ସ୍କୁଲରେ ପଢ଼ିବା ସମୟରେ ଗଣିଆ, କାର୍ତ୍ତିକ ଦୁଇଭାଇ ତାଙ୍କର ସାଂଗ ଥିଲେ । ଗଣିଆ ଭଲ ପଢୁଥିଲେ। କ୍ଲାସରେ ଫାଷ୍ଟ ହେଉଥିଲେ । ତାଙ୍କର ଭାଷଣ ଥିଲା ଖୁବ୍ ଶକ୍ତିଶାଳୀ । ସ୍ତବ୍ଧ କରିଦେଉଥିଲା ସଭାଗୃହକୁ । ଗୋଟାଏ ସ୍ଫୁଲିଂଗ ଥିଲେ ସେ । କାର୍ତ୍ତିକ ମଧ୍ୟ ଖୁବ୍ ଭଲ ଭାଷଣ ଦେଉଥିଲେ । ତାଙ୍କ ଭିତରେ ଥିଲା ସମ୍ଭାବନା । ଭବିଷ୍ୟତର । ସମୟେ ସମୟେ ଅଭିଭୂତ ହୋଇ ପଡୁଥିଲେ ଅନେକ । ଭାବୁ ଥିଲେ ପାଠପରେ ଏ ଦୁଇଜଣ ରାଜନୀତିରେ ଯୋଗ ଦିଅନ୍ତୁ । ଭଲ ରାଜନୀତିଜ୍ଞ ହୋଇପାରିବେ । ଅନ୍ତତଃ ନିଜ ଅଂଚଳପାଇଁ ଗୋଟିଏ ଭଲ ନେତା ବାହାରନ୍ତୁ । ଦାରିଦ୍ର୍ୟର ସୀମାରେଖାତଳେ ଚଳୁଥିବା ନବେ ପ୍ରତିଶତ ଏ ଗାଁର ଲୋକମାନେ ଖାଦ୍ୟ ପା'ନ୍ତୁ, ପାଣି ପା'ନ୍ତୁ, ଶିକ୍ଷା, ସ୍ୱାସ୍ଥ୍ୟ ରାସ୍ତାଘାଟ ସବୁର ଉନ୍ନତି ହେଉ । ଏଇମାନେ ହିଁ ଆଲୋକିତ କରିଦେବେ ଅନେକ ସମସ୍ୟାର ଅନ୍ଧକାରକୁ ।

ସେହି ଦୁଇ ଭାଇଙ୍କ ଭାଷଣ ପରେ ଅଜୟ ଯେତେବେଳେ ଉଠନ୍ତି କହିବାକୁ ବଡ଼ ପାଣିଚିଆ ଲାଗେ । କାହିଁ ତାଙ୍କ ଧମନୀରେ ଉଷ୍ଣତା ଯିଏ ବହନ କରିନେବ ଭାଷା, ଶବ୍ଦ ସଂଯୋଜନାକୁ ଠିକ୍ କାର୍ତ୍ତିକ, ଗଣିଆଙ୍କପରି । ସେମାନେ କହିଲାବେଳେ ଗୋଇଠିରେ ଠିଆ ହୋଇଯାଉଥିବେ । ଅଂଗଭଂଗୀରେ ଉଚ୍ଛୁଳି ଉଠୁଥିବ ଅବା ଉନ୍ମତ୍ତ ଲହରୀ ଖଣ୍ଡେ, ଯେମିତି କି ଜଗତକୁ ଭୁଲି ସେମାନେ ମଗ୍ନ । ଅଥଚ ତେଜ ନଥିବ ଅଜୟଙ୍କ ଭାଷଣରେ । ଖାଲି ସାଂଗ ହୋଇଗଲେ ମଣିଷର ମେଧା ବିକଶିତ ହୁଏନା । ଦରକାର ଭଗବାନଙ୍କର ମହତ ଦାନ, ତା' ହେଲା

ମସ୍ତିଷ୍କ । ପିଲାଦିନଠୁ ସେହି ଗୋଡ଼ାଣିଆ ହୋଇ କହିବାର ଅଭ୍ୟାସ ଦିନେ ଆଗ୍ରହକୁ ବଢ଼ାଇ ତାଙ୍କୁ କରିଦେଇ ପାରିଲା କଲେଜ ୟୁନିଅର ସେକ୍ରେଟାରୀ । ଡାକି ଆଣନ୍ତି ନନ୍ଦିନୀ ଶତପଥୀଙ୍କ ପରି ମୁଖ୍ୟମନ୍ତ୍ରୀଙ୍କୁ ଫଙ୍କସନରେ । ପୁଣି ଅନ୍ୟ ଗ୍ରୁପର ଆକ୍ରମଣକୁ ପ୍ରତିହତ କରି । ଆଶ୍ଚର୍ଯ୍ୟ ଲାଗେ । ପରେ ପରେ ହୋଇଯା'ନ୍ତି କଟକ ଜିଲ୍ଲା ଯୁବକଂଗ୍ରେସର ସେକ୍ରେଟାରୀ । ହେଲେ ଏସବୁର କି ମୂଲ୍ୟ ? ଗୋଟାଏ ନିମ୍ନ ମଧ୍ୟବିତ୍ତ ପରିବାର ପାଇଁ ଏସବୁର ସ୍ଥାନ କେଉଁଠି ? ମଣିଷ କ'ଣ ଚିନ୍ତାକରି ଜୀବନର ରାସ୍ତାରେ ଚାଲିବାକୁ ଭାବେ ନାଁ ଏମିତି ଚାଲୁଥାଏ ଅମଡ଼ା ବାଟରେ ? କି ଫାଇଦା ହୁଏ ଏ ସବୁରେ ମାତି ।

କେତେ ଜଣ ଯୁକ୍ତି କରନ୍ତି, ଯାହାକୁ ଯେଉଁ ମାର୍ଗ ଆକର୍ଷିତ କଲା । ଏ କି ପ୍ରକାର ଆକର୍ଷଣ ? ଯେଉଁ ଅଯଥା ଆକର୍ଷଣରେ ଅନିଶ୍ଚିତ ହୋଇଯାଏ ଜୀବନ ? ପରିବାରର ଦାୟିତ୍ୱ, ହା...ହୁତାଶ ବଢ଼ିଯାଏ ବାପା, ମା'ଙ୍କ ମନରେ । ଛୋଟ ଭାଇ, ଭଉଣୀଙ୍କର ମଧ୍ୟ ସମ୍ମାନ ରୁହେ ନାହିଁ । ବିଶ୍ୱାସ ରୁହେ ନାହିଁ ଜଣେ ବ୍ୟକ୍ତି ଉପରେ ? ମଣିଷ ଦେଖାଏ ଅନ୍ୟର ଉଦାହରଣ । ନିଜେ ସେ କ'ଣ ତା' ବୁଝିନଥାଏ । ବୁଝି ନଥାଏ ମଧ୍ୟ ନିଜର ପରିବେଶ, ପରିସ୍ଥିତି । ନିଜର ଆର୍ଥିକ ଅବସ୍ଥା । ଅନ୍ୟକୁ ଦେଖି କେମିତି ନିଃଷତ୍ତି ନେବ । ସବୁ ଯୁକ୍ତି ହୁଏ ନିରର୍ଥକ । କେଉଁଟା ପ୍ରଜୁଯ୍ୟ ହୋଇପାରେନା ଅଜୟଙ୍କ ପ୍ରତି ।

ତା' ସମସ୍ତେ ବୁଝନ୍ତି । ଗାଁ ଲୋକେ ବି । କୁହନ୍ତି...ଆହା... ଚୁ...ଚୁ... କରନ୍ତି । ଅଜୟଟା ଭଲା ଗୋଟାଏ ଚାକିରି କରିଥାନ୍ତା ? ବୋହୂଟା ଏତେ ହୀନସ୍ତା ହେଉନଥାନ୍ତା । ହେଲେ ତା' ହୋଇ ନଥିଲା ତାଙ୍କ ଜୀବନରେ ।

ସ୍ୱପ୍ନର ଉତ୍ତୁଙ୍ଗ ଶିଖରରେ ଚଢ଼ିବାର ମୋହମୟତା ତାଙ୍କୁ ଟାଣି ନେଇଥିଲା କଳାହାଣ୍ଡି ଜିଲ୍ଲାର ଟାଂଗର ପାହାଡ଼ ଯାଏ । କେଉଁଠୁ ହାବୁଡ଼ିଲେ ବଂଧୁବାଂଧବରେ ଜଣେ ଦାଦା । ଆସିଥିଲେ ଆଦିତ୍ୟଙ୍କ ପାଖକୁ । ପ୍ରସ୍ତାବ ଦେଇଥିଲେ ଅଜୟଙ୍କୁ ତାଙ୍କ ପାଖରେ ଛାଡ଼ିଦେବାକୁ । ସେଠି ସେ ଥିଲେ ଜୁନିଅର ଇଂଜିନିଅର । ତାଙ୍କ ପାଖରେ କେତେ କଣ୍ଟ୍ରାକ୍ଟର କାମ କରୁଥିଲେ । ସେମାନଙ୍କ ସାଂଗରେ ଅଜୟ ବି କାମ କରିବେ । ପଇସା ଉଡୁଛି । ଛୋଟ ଜାଗାରେ ବେଶୀ ନାଆଁ, ବେଶୀ ଖାତିର । ଯାହା କାମ କରିଲେ ବି ଲାଭ ତ ନିଃଶ୍ଚୟ ଚାଳିଶ ପରସେଣ୍ଟ ବାହାରିବ ।

ତା' ପରେ ପରେ କ'ଣ ହେଲା କେଜାଣି ଅଜୟଙ୍କର ପାଦ ସମତଳ ଭୂଇଁରୁ ଉଠି ପଡ଼ିଥିଲା ଗଡ଼ଜାତର ପାହାଡ଼ ପର୍ବତ ଘେରା ବଂଧୁର ପଥରେ । ପାଂଚ ଶହ କି:ମି ଦୂରରେ ରହି କି କାମ କରୁଥିଲେ ତାଙ୍କୁ ଜଣା । ଆଦିତ୍ୟ ବାଣୀବ୍ରତା କ'ଣ ଜାଣିପାରନ୍ତି କି କାମ କେଉଁଠି ହୁଏ ? କି ଟେଣ୍ଡର ଧରା ହୁଏ ? କେତେ ଲୋକ କାମ କରିବାକୁ ଦରକାର ? କେତେ ବିଲ୍ ମିଳେ ? ଦାଦାଙ୍କ ଘରକୁ ଯାଇଛନ୍ତି, ଅଛନ୍ତି ତାଙ୍କ ଆଖି ସାମ୍ନାରେ । ବାସ ଏତିକି ।

କେବେକେବେ ଆଦିତ୍ୟଙ୍କର ଅନୁସନ୍ଧିତ୍ସା ବଢ଼ି ଯାଇଛି । ପଚାରିଛନ୍ତି କି କାମ ଚାଲିଛି । ହେଲେ ସବୁବେଳେ ଅଜୟଙ୍କ ନିଷ୍ଠୁର ପଣିଆ ହେଲା ନୀରବତା । ସେହି ନୀରବ ପଣିଆ ବଡ଼ ଅସମ୍ମାନ ଜନକ ତାଙ୍କ ପିତୃତ୍ୱ ପ୍ରତି । ସେଥିପାଇଁକି ସେ କ'ଣ ଚୁପ୍ ହୋଇଯା'ନ୍ତି । କାହିଁ ପଇସା ପତ୍ର ଯାହା କଂାଧରେ ଏତେବଡ଼ ପରିବାରର ଭାର, ଅଥଚ ସେ ଏମିତି ପଳାତକ ସାଜିଲା କାହିଁକି ? ପଳାତକମାନଙ୍କର ହିଁ କିଛି ଖୋଜ ମିଳେ ନାହିଁ । ମିଳିଲେ ବି ଖୁବ୍ ଛଦ୍ମ ଆଚରଣ ସେମାନଙ୍କର । ତା' ଜାଣିପାରନ୍ତି ନାହିଁ ଆଦିତ୍ୟ କି ବାଣୀବ୍ରତା । କାମ ଚାଲିଛି । ବ୍ୟବସାୟ କଥା । ପଇସା ଦରକାର । ପଇସା ଦିଅ । ମାତ୍ର ଦଶହଜାର ଟଂକା ସଂଚୟ ଥିଲା ଆଦିତ୍ୟଙ୍କର । ମୂଳଧନ ଭାବରେ ଖର୍ଚ୍ଚ କରିବାକୁ ଦେଇଥିଲେ । ସେତକ ଶେଷ । ବିଲ୍ ପାଇଲେ ଶୁଝିବେ କହି ଆହୁରି ମାଗନ୍ତି ଅଜୟ ।

ତିନି ଚାରିମାସରେ ଗାଁକୁ ଆସନ୍ତି । ମୁହଁକୁ ଶୁଖାଇ ଅଭାବର କଥା ବଖାଣନ୍ତି । ବ୍ୟବସାୟ ପାଇଁ ପଇସା ମାଗନ୍ତି । ତୃତୀୟ ଶ୍ରେଣୀର ଜଣେ ତଳିଆ କର୍ମଚାରୀ ଆଦିତ୍ୟ । ପେଟପାଟଣା ପାଇଁ ଯେଉଁଠି ଅହରହ ସଂଘର୍ଷରତ, ଅନ୍ୟ ପିଲାମାନେ କେମିତି ଚଳିବେ, ସେହି ନୈରାଶ୍ୟରେ ଜୀବନର ସବୁ ମୁହୂର୍ତ୍ତ ଖର୍ଚ୍ଚ ହୋଇଗଲାଣି, ସେଠି ଯୋଗ୍ୟ ହୋଇସାରିଥିବା ବଡ଼ ପୁଅ, ଯାହା ପାଖରୁ ଘରପାଇଁ କିଛି ସେ ଆଶା କରିଥିଲେ, ତା'ର ଏ ପ୍ରକାର ଚାପରେ ସେ ହତଭମ୍ବ ହୋଇଯା'ନ୍ତି । ବାଣୀବ୍ରତା ମା' । ବଡ଼ପୁଅ ପ୍ରତି ଅତ୍ୟଧିକ ସ୍ନେହ ତାଙ୍କୁ ଦୁର୍ବଳ କରିଦିଏ । ତା'ର ସୁଖ ଦୁଃଖ ମନବୁଝିବାରେ ସେ ବ୍ୟସ୍ତ ଥିଲେ ।

ପୁଅ ତାଙ୍କୁ ଟଂକା ମାଗିବା ମାତ୍ରେ ଦୌଡ଼ନ୍ତି ପହଲା ବୋଉ ପାଖକୁ । ବଂଧା ରଖନ୍ତି ସୁନାଗହଣା । ଟଂକା ଆଣନ୍ତି ଉଚ୍ଚ ସୁଧରେ । ପ୍ରାଇଭେଟ୍ ଲୋକଙ୍କଠୁ ଆରମ୍ଭକରି ବ୍ୟାଙ୍କ୍‌ରେ, କୋ-ପରେଟିଭ୍ ସୋସାଇଟି, ସବୁର ଦ୍ୱାରସ୍ଥ ହୋଇଛନ୍ତି । ମୁହଁ ସଂଢର କେଉଁ ନିରସ ମୁହୂର୍ତ୍ତରେ, ବର୍ଷାଘନ ଶ୍ରାବଣରେ, ତତଲା ବୈଶାଖରେ ଯାଇ ମାଗିଛନ୍ତି ''ଖୁଡ଼ୀ ତୁମରି ପାଖକୁ ଆସିଥିଲି ।''

ଅଧା କଛା ମାରିଥିବା ପହଲାବୋଉ, ଯିଏ ତାଙ୍କ ଜମିରେ ମଜୁରୀ ଖଟେ, ଢିଙ୍କିରେ ଧାନକୁଟେ, ତା' ପାଖରେ ବାବୁଘର ବୋହୂ ହାତପାତେ । ତା'ଠୁ ବଡ଼କଥା ଆଉ କିଛି ଅଛି ? ପହଲା ବୋଉ ବୁଝେ । ଜାଣେ ବାବୁଘର ବୋହୂର ଦୁଃଖ, ମନକଥା । ସେ ମଧ୍ୟ ଅଜୟକୁ କୋଳରେ କାଖରେ କରିଥିଲା । କେମିତି ମନା କରିବ ?

ବାଣୀବ୍ରତା ପୁତ୍ର ପ୍ରେମରେ କିଛି ଆକଟନ୍ତି ନାହିଁ । ସହାନଭୂତିରେ, ଦରଦରେ ତାଙ୍କର କଣ୍ଠ ଓଦା ହୋଇଯାଏ । ସେ ଅଜାଡ଼ି ଦିଅନ୍ତି ଧନ ଅଜୟଙ୍କ ଅଣ୍ଟିରେ । ସେ ପୁନଶ୍ଚ ଫେରିଯା'ନ୍ତି ନୂଆପଡ଼ା । ସେଠି ମିଶିଯାଏ ଜୀବନ ସମସ୍ତଙ୍କ ସାଙ୍ଗରେ । ଏମାନେ ଜାଣନ୍ତି ନାହିଁ ଜୀବନ ତାଙ୍କର କେଉଁ ରାସ୍ତାରେ ଛୁଟୁଛି । ଦାଦା ବି ହସି ଦିଅନ୍ତି କିଛି ପଚାରିଲେ । ସେ ବି ଚାଲାକ ମଣିଷ ଜଣେ । ବୋଧହୁଏ ଆଦିତ୍ୟଙ୍କର ଅସନ୍ତୋଷକୁ ବୁଝି ନେଇଥାନ୍ତି । ହସି ଦେଇ ଲାଘବ କରିଦିଅନ୍ତି ତାଙ୍କର ଭାରି ହୋଇ ପଡୁଥିବା ସନ୍ଦେହୀ ମନକୁ ।

ପୁନଶ୍ଚ ଆସନ୍ତି ସେ ଗାଁକୁ । ଜନନୀ ବେକ ଖାଲି କରି ବଢ଼ାଇ ଦେଇଥାନ୍ତି ସୁନାହାର, କାଚ, ନାକର ନୋଥ, ଅନ୍ୟୁନ କୋଡ଼ିଏ ଭରି ସୁନା । ପୁଅର ଦରକାର । ବିପଦ ଆପଦରେ ସୁନା ଜିନିଷ କାମରେ ଆସିବନି ତ କିଏ ଆସିବ ? ସବୁ ବଢ଼ାଇ ଦେଇଥାନ୍ତି ଗୋଟାକ ପରେ ଗୋଟାଏ । ରିକ୍ତ ହୋଇଯା'ନ୍ତି ବାଣୀବ୍ରତା । ଆସ୍ତେ ଆସ୍ତେ ହତାଶାର ଦୀର୍ଘଶ୍ୱାସ ଓହ୍ଲାଏ ତାଙ୍କ ଆଖିରେ । ଫାଙ୍କା ହୋଇଯାଏ ସେ ଆଖିର ଚାହାଣୀ । କେଉଁ ଉଦାସୀନତାର ଛାପ ଟଳଟଳ କରୁଥାଏ ସର୍ବଦା । ସେକଥା ଉପରୁ ଦେଖି ବୁଝିହୁଏ । ରାତିରେ ତାଙ୍କର ନିଦ ଉଡ଼ିଯାଏ । ବାଉଁଶ ବୁଦା କଟ୍‌କଟ୍ କରି ଉଠେ ଝର୍କା ସେପଟୁ । ସନସନ ଶବ୍ଦରେ ଛାତି ଭିତରେ ଖେଳିଯାଏ ଗୋଟାଏ ଅଜଣା ଆଶଙ୍କାର ପ୍ରତିଧ୍ୱନି । ରାତିର ଏଇ ନୀରବ ପ୍ରହରର ଭାଷା କେବଳ ସେ ହିଁ ବୁଝନ୍ତି । ବେକରେ ହାତମାରି ଦରାଣ୍ଡନ୍ତି ହାରଟା । ଖାଲି ବେକ । ଜୀବନ କାଳ ଭିତରେ କେବେହେଲେ ଖାଲି ବେକ କରିନଥିଲେ । ହେଲେ ଭାଗ୍ୟର କି କ୍ରୁର ଉପହାସ । ତାଙ୍କର ବଡ଼ପୁଅ ଅଯୋଗ୍ୟ ହେଲା ଏତେ ଯେ ଶେଷକୁ ତାଙ୍କ ପିତୃ ଅର୍ଜିତ ହାରଟା ରହିଲାନି ବେକରେ । ସୁନା ପ୍ରତି ଏତେ ମୋହ ତାଙ୍କର ସେଇଥିରେ ସେ ଦିନକୁ ଦିନ କ୍ଷୀଣ ହୋଇ'ଯାନ୍ତି । ନାଳରକ୍ତ ଝାଡ଼ା ଧରିଥାଏ ଛାଡ଼େନି । ଚିନ୍ତାରେ ଚିନ୍ତାରେ ଶରୀର ଆହୁରି ଖରାପ ହୋଇ ଆସେ । ଜୀବନକୁ ବିକଳରେ ହାତ ବଢ଼ାଇଲେ ବି ଜୀବନ ଦୂରେଇ ଯାଉଥାଏ । ଆଶା, ସ୍ୱପ୍ନ ସବୁ ଧୂଳିସାତ୍ ହୁଏ ।

କିନ୍ତୁ ମା'ର ମନ ତାଙ୍କର । ଅନ୍ତ ଫାଡ଼ି ଜନ୍ମ ଦେଇଛନ୍ତି ସନ୍ତାନଙ୍କୁ । ସବୁବେଳେ ମନ ଖରାପ କରି ବସିଲେ କାଳେ ପୁଅ ଉପରେ ପଡ଼ିବ, ସେଥିପାଇଁ ମନକୁ ଭୁଲେଇ ନିଅନ୍ତି । ପୁଣି ଖୁସୀ ହେବାକୁ ଚେଷ୍ଟା କରନ୍ତି । କ୍ଷମା ଆସେ ହୃଦୟରେ । ଚାହିଁ ବସନ୍ତି କେବେ ସେ ଫେରିବେ ଏତେ ବାଟରୁ । ବୟସ ହୋଇଯାଉଛି । ବାହାଘର ହେବା ନିହାତି ଦରକାର । ସେଠୁ ନ ଆସିଲେ କିଏ ବା ଏଠି ଝିଅ ଦେବ ?

କି ପଇସା କମେଇବ ସେ ଚିନ୍ତା ତାଙ୍କର ନଥାଏ । କେମିତି ଫେରିଆସିବ ସେ ଭୂଇଁରୁ ସେହି ତାଙ୍କର ମୁଣ୍ଡରେ ବୋଝହୋଇ ବସିଥାଏ । କିଏ କାଳେ କିମିଆ କରିଦେବ ? ସିଆଡ଼େ ଯଦି ରହିଯିବ ? ବୋହୂଟିଏ ଆସିଲେ କେଉଁଠି ସେ ବୋହୂ ପଣିଆ କରିବ ? ତାଙ୍କର ତିନୋଟି ବାଳୁତ ସନ୍ତାନଙ୍କୁ କିଏ ଦେଖିବ ? ବୁଢ଼ୀକାଳେ ସେ କ'ଣ ଏତେ ଖଟିପାରିବେ ? ଘର ସଂସାରର ଯେଉଁ ଗହନ ବ୍ୟାପାର, ଯେଉଁ କିଟିମିଟିଆ ଜଂଜାଳ,ସେ କି କ'ଣ କମ୍ ? ଏକା ହୋଇ ସେ କେମିତି ବୁହାଇବେ ?

ମା'ର ଅବୁଝା ମନ । ଅଲିଅଳ ବଡ଼ ପୁଅ । ଏତେ ଦୂରରେ ରହିବାକୁ କ'ଣ ଗ୍ରହଣ କରନ୍ତି । କୁହନ୍ତି ତୁ ଫେରିଆ ମୋ ପାଖକୁ । ସେଠି ରହିଗଲେ ମୁଁ ଶୂନ୍ୟ ହୋଇଯିବି । ଅନ୍ତତଃ ମୋ ପାଖରେ ଥାଆ ବାପା । ସେତିକି ତ ମୋର ସାନ୍ତ୍ୱନା । କେତେ କଷ୍ଟରେ ବସନ୍ତ ରୋଗରୁ ବଂଚିଯାଇଛୁ । ଦରକାର ନାହିଁ ମୋର ଧନରତ୍ନ ।

ଅଜୟ ଦିନେ ଫେରିଲେ । ସବୁବେଳେ ଗମ୍ଭୀର । ନିରୁତ୍ତର । ଚୁପ୍‌ଚାପ୍ ହୋଇ ଚଳପ୍ରଚଳ ହେଉଥିବେ । କଥା କହିଲେ ପାଟି ଫିଟାନ୍ତି ନାହିଁ । ଆଲୋଚନା କରି ବସିଲେ ଘରଛାଡ଼ି ଚାଲିଯିବେ ବଜାରକୁ ।

ତାଙ୍କ ପଂହଚିବା ପରେ ଘନଘନ ଚିଠି । ପ୍ରାଇଭେଟ୍ ଲୋକଙ୍କଠାରୁ ସୁନାବଂଧକ ରଖି ଟଂକା ଆଣିଥିଲେ । ସେମାନେ ତାଗିଦା କରିଛନ୍ତି ସୁନା ମୁକୁଳାଇବାକୁ । ବ୍ୟାଙ୍କରେ କିଛି ଅଛି । ସେମାନଙ୍କଠାରୁ ମଧ୍ୟ ନୋଟିସ ଆସୁଛି । ପଇସା ଧାରଉଧାର ଅନେକଙ୍କଠାରୁ କରିଛି ଶୁଝିଦେଇ ଯା'ଅ । ଲଜ୍ଜାରେ ଅଧୋନତ ହୋଇଯାଏ ବାଣୀବ୍ରତାଙ୍କ ମୁହଁ । କିଛି ପଚାରିଲେ ଅଜୟ ଉତ୍‌କ୍ଷିପ୍ତ ହୋଇପଡ଼ନ୍ତି । ହାଉଁଆ ପାଟିଟାଏ କରି ଚାପି ଦିଅନ୍ତି ବାପା, ମା'ଙ୍କର ପ୍ରଶ୍ନର ଉତ୍ତର । ''ମୋ କଥା ମୁଁ ବୁଝିବି । ତୁମର ମୁଣ୍ଡ ଖେଳେଇବା ଦରକାର ନାହିଁ ।''

ତାଙ୍କର ଏ ରୁକ୍ଷ ଉତ୍ତରରେ ନିଜର ମାନମହତ ହଜିଯିବାର ଆଶଂକାରେ ବାଣୀବ୍ରତା ଚୁପ୍ ହୋଇଯାଆନ୍ତି । ନୀରବରେ ଆଖି ଛଳଛଳ କରନ୍ତି । ଭାଇ, ଭଗାରୀରେ ଘର । କାନ ଡେରିବେ, କଟୁକଥା କଟାକଟି ହେଲେ । ଅଗତ୍ୟା ଚୁପ୍ ହେବା ବ୍ୟତିରକେ ଉପାୟ କ'ଣ ?

ନିଜ ବେପାରରୁ କେବଳ ପାଂଚ୍‌ହଜାର ଟଂକା ଦେଇ ରାଜଦୂତ ମଟର ସାଇକେଲ୍‌ଟାଏ କରିଥାନ୍ତି ଅଜୟ । ଭାରି ସଉକି ତାଙ୍କର ଜିନିଷଟି । ଏକମାତ୍ର ପାରିବା ପଣିଆର ନମୂନା । ଘରଲୋକ କାହାକୁ ଛୁଆନ୍ତି ନାହିଁ । ବଡ଼ ଅହଂକାର ସେଥିପାଇଁ ତାଙ୍କର ।

ଗାଁକୁ ଫେରିବାପରେ ଅନେକ ଲୋକ ଆସନ୍ତି ତାଙ୍କ ପାଖକୁ । କଣ୍ଟ୍ରାକ୍‌ଟ୍ରୀ ଶିଖିବାକୁ । ସେମାନେ ଜଣଜଣହୋଇ ଆସନ୍ତି ତାଙ୍କ ଘରକୁ । ବାଣୀବ୍ରତାଙ୍କର ଆଦର ଅଭ୍ୟର୍ଥନାର କମ୍ ନଥାଏ । ସେଥିପାଇଁ ସେମାନେ ପଲ୍ଲବିତ ହୋଇପାରନ୍ତି । ସଂପର୍କ ବଢ଼ାନ୍ତି । ସେମାନେ ଅଜୟଙ୍କ ବ୍ୟବସାୟର ପାର୍ଟନର ମଧ୍ୟ ହୋଇଯିବାର ଶୁଣାଯାଏ । ଅଜୟ ସମସ୍ତଙ୍କୁ ପ୍ରଶୟ ଦିଅନ୍ତି । ତିନି ତିନି ଜଣ ଲୋକ ମଟର ସାଇକେଲ୍ ପଛରେ ବୁଲୁଥାନ୍ତି । ଗାଁରୁ କଟକ, ଭୁବନେଶ୍ୱର ଯାଏ । କେତେ ତେଲ ପୋଡ଼ା ହୁଏ । ସେ କଥା ଘରେ କେହି ଜାଣନ୍ତି ନାହିଁ । ସେସବୁ ଅଜୟ ହାତରୁ ଖର୍ଚ୍ଚ କରନ୍ତି । ଯେଉଁ ଛୋଟଛୋଟ କାମ ଧରିଥାନ୍ତି ସେସବୁ ସେଥିରୁ ଉଠିଯାଏ । ବଡ଼ ବଡ଼ ହୋଟଲରେ ରୁହନ୍ତି କି କ'ଣ ପକେଟରୁ ବିଲ୍ ବାହାରେ । ମୌଜ ବେଶ୍ ଚାଲେ ସାଂଗ ସଂଗତରେ । ତା' ସହିତ ଗାଁର, ଅଂଚଳର ରାଜନୀତି ଚାଲେ ।

ଯେଉଁ ଲୋକମାନେ ତାଙ୍କଠାରୁ କାମ ଶିଖିଥାନ୍ତି ସେମାନେ ଫୁର୍‌କରି ଉଡ଼ିଯାଇଥାନ୍ତି ନିଜର ଗନ୍ତବ୍ୟ ପଥରେ । ପୁଣି ଆସନ୍ତି ନୂଆ ମଣିଷ । ସମସ୍ତେ ଉଡ଼ନ୍ତା ପକ୍ଷୀ । କାମ ସରିଗଲା ଚାଲ । ମଟର ସାଇକେଲ୍‌ରେ ବସ୍ । ବୁଲାବୁଲିକର, ଖାଇବା ପିଇବାକର, କାମ ଶିଖ, ଯାଅ । ସେମାନେ ବୁଝି ନେଇଥାନ୍ତି ଅଜୟଙ୍କ ସାମନ୍ତବାଦୀ ମନବୃତ୍ତି । ଚାରି ଛଅମାସ ସାଂଗ ହେଲାପରେ ଯିଏ ଯାହାର ସୁବିଧା ଦେଖି ଖସିଯା'ନ୍ତି ।

ଅଜୟଙ୍କର କି ବ୍ୟବସାୟ ଚାଲେ ତା' କେହି ଜାଣିନଥାନ୍ତି । କେତେ କାମ ସେ ବର୍ଷକୁ ପାଉଛନ୍ତି ତା' ଜଣା ନଥାଏ । ଘର ଲୋକଙ୍କୁ ପଚାରିଲେ କୁହନ୍ତି- ପାର୍ଟନରମାନେ ମାରି ଖାଇଦେଲେ । ସ୍ୱାର୍ଥ ହାସଲ କରି ଚଂପଟ ଦେଲେ । ଆଦିତ୍ୟ ସରଳ ପ୍ରକୃତିର ମଣିଷ । ସେ ଭାବନ୍ତି ସେଇଆ ବୋଧହୁଏ ହେଉଛି । ନହେଲେ

ଅଜୟଙ୍କର ଉନ୍ନତି କାହିଁକି ହେଉନି । ବାଣୀବ୍ରତା ମଧ ଗରଗର ହୁଅନ୍ତି ସେହି ଠକି ଚାଲିଯାଇଥିବା ମଣିଷଙ୍କ ଉପରେ । ପୁଅର ସାଂଗଭାବି ଯେଉଁମାନଙ୍କୁ ସେ କରିଧରି ଖାଇବାକୁ ଦେଉଥିଲେ । କେତେ ଦିନ ସେମାନେ ତାଙ୍କ ଘରେ ମଧ ରହିଛନ୍ତି । ନିଜର ମଣିଷପରି । ଅଥଚ ସେଇମାନେ ହିଁ ଏ ସବୁ କରିପାରିଲେ ।

ପ୍ରକୃତରେ ସେ ବୁଝନ୍ତି ନାହିଁ କିଏ କାହାକୁ ଠକେ ? ଅଜୟଙ୍କର କ'ଣ ଥିଲା ଯେ ସେମାନେ ନେଇଗଲେ ? କେତେ ଆୟ ହୋଇଥିଲା ଯେ ସେମାନେ ମାରିନେଲେ ? ଅଜୟ କ'ଣ ଦୁଧଖିଆ ଛୁଆ ? ପଇସାକୁ ଚିହ୍ନନ୍ତି ନାହିଁ ? ହିସାବ ଜାଣନ୍ତି ନାହିଁ ? ପାର୍ଟନରର ପଇସାରଭାଗ କେତେ ତା' ହିସାବ କରିପାରିବେ ନାହିଁ ଯେ ମାରିନେଲା ଜଣେ ? ଠକି ନେଲା ?

ପାରୁନଥିବା ଲୋକଙ୍କର ଭାଷା ବଡ଼ ଟାଣ ଜଣା ପଡ଼େ ବାହାରକୁ । ଅଥଚ ସେମାନଙ୍କର ଫମ୍ପା କଥା ଏମିତି ଶବ୍ଦକରି ଭିତରେ ତାଙ୍କୁ ଦୋହଲାଇ ଥାଏ, ତା' ସେମାନେ ହିଁ ବୁଝନ୍ତି । ସେଥିପାଇଁ ଝିଅଟା ବେଳେବେଳେ ବିରକ୍ତ ହୁଏ । କୁହେ, ତୁମ ନିଜ ପିଲାର ଦୋଷ । ଯେ ହିସାବ ରଖେନା, ସେ କାହିଁକି ବ୍ୟବସାୟ କରିବ ? ହାଟରେ ବସି ଯଦି ପାର୍ଟନରକୁ କହିବ ଯା'ବୁଝିଆ କାମ କେତେ ଦୂର ଗଲା, ସେଥିରେ ସେ କ'ଣ ଦେଖିଲା, କ'ଣ କେତେ ମାରିନେଲା କିଏ କହିବ ? ସାମନ୍ତବାଦୀ ମନନେଇ ବ୍ୟବସାୟ ହୁଏନି । ନହେଲେ ଆଜି ମାରୱାଡ଼ିମାନେ ସାରା ଭାରତରେ ବଡ଼ ବେପାରୀ ହୋଇନଥାନ୍ତେ । ଗୋଟାଏ ଟଙ୍କା କାଟିଦେଲେ ଆକାଉଣ୍ଟରୁ ବ୍ୟାଙ୍କ୍‌ରେ, ପଚାରି ଦିଅନ୍ତି ତା'ର କାରଣ । ଭଡ଼ାଘରେ ରୁହନ୍ତି । ଟଙ୍କା ଖଟାନ୍ତି । ଆଉ ତୁମ ଦୈନନ୍ଦିନ ଜୀବନ ଆଡ଼ମ୍ବର ଚଉଡ଼ାରେ, ବଡ଼ଲୋକି ଦେଖେଇବାରେ ତ ସବୁ ଲାଭ ମାଡ଼ଖାଇଲା । ତୁମେ ଆଉ କେଉଁ ବ୍ୟାପାରରେ ଠିଆହୋଇ ସମକକ୍ଷ ହେବ  କାହା ସାଙ୍ଗରେ ? ସମକକ୍ଷ ହୁଅ ନ ହୁଅ ନିଜର ଗୁଜୁରାଣ ମେଣ୍ଟେଇବା ପାଇଁ ଯେତିକି ଦରକାର ସେତିକି କମେଇବା ତ ଦରକାର ।

ବାହାଘର ପରେ ବି ଅଜୟଙ୍କର ଜୀବନର ମାର୍ଗ ପ୍ରଦର୍ଶନ ହୁଏ ନାହିଁ । ସେହି ତିନିତିନିଟା ବେକାରୀ ଲୋକଙ୍କୁ ଧରି ମଟର ସାଇକେଲ୍‌ରେ ଘୂରିବା ଚାଲୁରୁହେ । ହାଟରେ ସକାଳୁ ସକାଳୁ ଗୁଲିଖଟି ଆରମ୍ଭ ହୋଇଯାଏ । ନାଁ ଥାଏ ଦାୟିତ୍ୱ ତେଲ, ଲୁଣ ସଂସାରର ନାଁ କିଛି ? ବରଂ ବାଣୀବ୍ରତା କିଛି କହିଲେ ସେ ଗରଗର ହୋଇ ବାହାରି ଯାଆନ୍ତି । ସବୁବେଳେ ନିଜକୁ ଉଢୁଆଳକରି ରଖନ୍ତି ନିତ୍ୟ ଜୀବନ ପ୍ରବାହଠାରୁ । ସାମ୍‌ନାରେ ରହିଲେ ସିନା କିଏ କହିବେ ! ଯାହା

ବିରକ୍ତହୋଇ ବକାବକି ହେଲେ ବି ଘର ଭିତରେ ହେବେ । ତାଙ୍କର ଅବର୍ତ୍ତମାନରେ । ସେଥିରେ ତାଙ୍କର ଯାଏ ଆସେ କେତେ !

ସାମାନ୍ୟ ଚିନିଟିକେ ସରିଗଲେ ଶାନ୍ତି ମୁହଁ ଭୁରୁଗାଁ କରନ୍ତି । ବଜାରରୁ ଆଣିଲେ ଚା' ତିଆରି ହେବ କୁହନ୍ତି । ସାଙ୍ଗେସାଙ୍ଗେ ଅଗ୍ନିର ଝଲକଟାଏ ବାହାରି ଆସେ ଅଜୟଙ୍କ ଭିତରୁ । ମୋର ଚା' ଖାଇବା ଦରକାର ନାହିଁ । ଝଡ଼ପରି ଉଠିଯିବେ ହାଟ ଆଡ଼କୁ । ପଇସା ନଥିଲେ ମଣିଷଟିଏ କ'ଣ ଏମିତି ଚପିଯାଇଥାଏ ? ବିରକ୍ତିରେ ଭରି ରହିଥାଏ ? ନହେଲେ ସାମାନ୍ୟ କଥାରେ ଚିଡ଼ି ଉଠନ୍ତି କାହିଁକି ?

ଆଦିତ୍ୟ କେତେ କରିବେ ? ସରକାରୀ ଚାକିରି ତାଙ୍କର । ଅଡ଼ିଟର କାମ । ଘରଛାଡ଼ି ବହୁ ସମୟରେ ବାହାରେ ରହିବାକୁ ହୁଏ । କେତେଟଙ୍କା ବା ଦରମା ପାଆନ୍ତି ! ସାମାନ୍ୟ ବାରଶହ ଟଙ୍କାରେ କେତେ ଟାଣିବେ ? ଆଜି ବାହାଘର ପଡ଼ିଲା ତ କାଲି ବ୍ରତଘର, ଏଣେ ଚାଷବାସ, ଘର ସଂସାର, ସବୁ ଟାଣୁଟାଣୁ ତାଙ୍କର ବା ଟଙ୍କା କାହିଁ ? ତଥାପି ସେହି ସ୍ୱଳ୍ପ ପଇସାରେ ଦୁନିଆର ସବୁ ସମ୍ଭାବନା ଯେମିତି ସାକାର ହୋଇଯାଏ । ଗାଁରେ ପୁଅବୋହୂ ଚଳିଯାନ୍ତି, କଟକ ବସାରେ ଅନ୍ୟ ପିଲାମାନେ । ସବୁ ବାସ୍ତବତା ଗୋଟାଏ ନିଜସ୍ୱ ଟାଣରେ ଆଗକୁ ଚାଲିଥାଏ । ହେଲେ ମାନସିକ ଦହନର ଶେଷ ନାହିଁ ଆଦିତ୍ୟ ଏବଂ ବାଣୀବ୍ରତାଙ୍କର ।

କଟକରେ ଘରଭଡ଼ା ବାକିରୁହେ । ଘରବାଲା ବୁଢ଼ାଟି ଖୁବ୍ ଭଦ୍ର । ପଇସା ମାଗେନି । ବର୍ଷ ବର୍ଷ ଧରି ଭଡ଼ାବାକି ରୁହେ । ସେଇଟା ଗୋଟାଏ ବିରାଟ ଭାରହୋଇ ଅଜାଡ଼ିହୋଇପଡ଼େ ତାଙ୍କ ଉପରେ । ଯାହା ସୁନାଗହଣା ଥିଲା ସବୁ ବନ୍ଧା ଦିଅନ୍ତି ଘରବାଲାକୁ । ଏମିତି କି ଆଦିତ୍ୟଙ୍କ ସୁନା ମେଡ଼ାଲ ଦୁଇଟା ବି । ବୁଢ଼ାଟା କ'ଣ ବୁଝେ କେଜାଣି ସମୟେ ସମୟେ ଆସି ଖିଙ୍କାରି ହୁଏ । କୁହେ ମେଡ଼ାଲ ଦୁଇଟା ସୁନା ନୁହେଁ । ସେ ଦୁଇଟା ନେଇଆସ । ବାଣୀବ୍ରତାଙ୍କ ହୃଦୟ ଛଳଛଳ ଦରଦ ଟିକକ ଆଖିର ଅଶ୍ରୁ ହୋଇଯାଏ । କୁହନ୍ତି-ନେଇଆସ ମେଡ଼ାଲ ଦୁଇଟା । ଘରକରି ଜିନିଷଟାଏ ରହିପାରିଲାନି । ତୁମ ପିଲାମାନେ ଦେଖିବେ, ବୋହୂମାନେ ଦେଖିବେ । ନେଇଆସ । ବିକଳରେ ବେଳେବେଳେ ଲୁହ ଝରାନ୍ତି ବାଣୀବ୍ରତା । ହେଲେ ଆଦିତ୍ୟ ଘର ଚଳାନ୍ତି । ସେ ବୁଝି ସାରିଥାନ୍ତି ପେଟର ଦାଉ ସମ୍ଭାଳିବାଠାରୁ ବଡ଼କଥା ଆଉ କିଛି ନାହିଁ । କାଲି ସକାଳେ ଯଦି ଚୁଲି ନ ଜଳିବ କେଉଁଠି ରହିବ ତୁମର ମାନ

ସଂଭ୍ରମ । ସେସବୁ ଭାବପ୍ରବଣତାର, ସ୍ୱପ୍ନର କଥା ଆଦିତ୍ୟ ଖୁବ୍ କମ୍ ଭାବନ୍ତି । ଯେଉଁ ପୁଅକୁ ଅନ୍ତଫାଡ଼ି ଜନ୍ମ ଦେଇଥାଏ ମା' ସେ ଯଦି ପେଟରେ ନାତ ଦିଏ ଏମିତି, ଘର ସଂସାର ଉଜାଡ଼ିଦିଏ, ତା' ହେଲେ କେଉଁ ମାନ ସମ୍ମାନର ମେଡ଼ାଲକୁ ସେ ସାଇତି ରଖିବେ ? ତା' ଭାବନ୍ତି ଆଦିତ୍ୟ । ପ୍ରାଣଠାରୁ ମାନସମ୍ମାନକୁ ସେ ବଡ଼ ଭାବନ୍ତି ନାହିଁ । ଘରବାଲା ବୁଢ଼ା ଆସୁ । ରଡ଼ିକରୁ । ଗାଳିଦେଉ ବା ଭଦ୍ରୋଚିତ ଭାବରେ କଥା କହୁ, ସେ ଅସହାୟ ପରିସ୍ଥିତିକୁ ସେ ତଳକୁ ମୁହଁପୋତି ସମ୍ମୁଖୀନ ହେବେ । ମୁହଁ ତାଙ୍କର ଛୋଟ ହୋଇ ଯାଉଥିବ । ହେଉ ପଛେ । କିନ୍ତୁ ସେ ନିରୁପାୟ । ବରଂ ବର୍ଷବର୍ଷ ଧରି ଲୋକଟା ଯେ ଭଡ଼ା ବାକି ରଖୁଛି ଆଉ ପିଲାମାନେ କଟକରେ ରହି ପଢୁଛନ୍ତି ତା' ହିଁ ବଡ଼କଥା ତାଙ୍କ ପାଇଁ । ନହେଲେ ଅନ୍ୟ କୌଣସି ଜାଗାକୁ ସେ ଉଠି ଯାଇ ପାରିବେ, ସେ ସାମର୍ଥ ତାଙ୍କର ନାହିଁ । ପିଲାମାନେ ତ ଆଉ ଅଧା ପାଠ ପଢ଼ି ରହିବେ ନାହିଁ ! ବଡ଼ପୁଅବୋଲି ଯାହାକୁ ଆଶା କରିଥିଲେ ବାପା ପଛରେ ଲାଗିଯିବ, ଭରସାହେବ ପରିବାରର, ସେ ତ ହେଲା ପଳାତକ । ଜୀବନଠାରୁ । ଦାୟିତ୍ୱଠାରୁ । କଥା କହିଲେ ଝଗଡ଼ା ବ୍ୟତିରକେ ଆଉ କ'ଣ ହେବ ? ବୋହୂଟା ଉପରେ କଥାଗୁଡ଼ିକ ଟାଇଁଟାଇଁ ବାଜିବ ସିନା, ହେଲେ ଅଶାନ୍ତି ଛଡ଼ା ଶାନ୍ତି କାହିଁ ?

ସେଦିନ ଶାନ୍ତି କେତେ ଖୋସାମତ କରି କହିଥିଲା ଟିକେ ଡାକ୍ତର ପାଖକୁ ଚାଲ । ମୁହଁ ବୁଲାଇ ଅଜୟ ଚାଲିଗଲେ । କହିଲେ-ବାପାଙ୍କ ସାଙ୍ଗରେ ଚାଲିଯାଅ । ପଇସା ନଥିଲେ କ'ଣ ମଣିଷର ସହାନୁଭୂତିଶୀଳତା ଟିକକ କମିଯାଏ । ଦରଦଭରା କଥାଟିକିଏ ତ କହିପାରିବ । ଦାୟିତ୍ୱ ନେବାକୁ ପଡ଼ିବବୋଲି ଏତେ ମଣିଷ ରୁକ୍ଷହୋଇଯାଏ ? ନାଁ ଏମିତି ରୁକ୍ଷତା ଦେଖାଇ ଖସି ଚାଲିଯିବାର ଏ ଗୋଟାଏ ଥାଏ ବାହାନା ?

କାହାକୁ ମୁହଁଖୋଲି କିଛି କୁହନ୍ତି ନାହିଁ ଶାନ୍ତି । ବାପଘରୁ ଯାହା ଗହଣା ଆଣିଥିଲେ ସବୁ ତ ନେଇ ବନ୍ଧା ପକାଇଲେ ଅଜୟ । ଏବେ ଶୂନ୍ୟ ହସ୍ତ ସେ । ଲଙ୍ଗଳାବେକ, ହାତରେ ବ୍ରୋଞ୍ଜର କାଚ । ପିନ୍ଧନ୍ତି ମୋଟାମୋଟା ସମ୍ବଲପୁରୀ ଶାଢ଼ୀ । କାହାକୁ କରିବେ ଏକଥା ! କେବଳ ନୀରଳସ ଗୋଟାଏ ଆବେଗହୀନ ଜୀବନ ତା'ର ଆପଣାଛନ୍ଦରେ ଗତିଶୀଳ ହୁଏ । ସେ ଶୋଇଶୋଇ ବିତାନ୍ତି ସବୁତକ ସମୟ । ଘରଦ୍ୱାର ସଫା ନାହିଁ, ଲୁଗାପଟା ପ୍ରତି ଯତ୍ନ ନାହିଁ । ଭଲ ରାନ୍ଧିବାକୁ ମନ ନାହିଁ । ଏତେ ଅମନଯୋଗୀ କ'ଣ କେବଳ ଏହି ଅର୍ଥାଭାବ ପାଇଁ ନାଁ ତାଙ୍କର ସ୍ଥାଣୁ ଜୀବନ ପାଇଁ ? କିଛି ବୁଝି ହୁଏନି ।

ପିଲାମାନେ ଗୋଟାକପରେ ଗୋଟାଏ କୋଳକୁ ଆସନ୍ତି । ଆହୁରି ଜଞ୍ଜାଳ ବଢ଼େ । ଅର୍ଥର ଆବଶ୍ୟକତା ବଢ଼େ । ସେମାନଙ୍କର ଖାଇବା, ପିନ୍ଧିବା, ପାଠପଢ଼ା ଖର୍ଚ୍ଚ ସବୁକିଛିପାଇଁ ଦରକାର ଅର୍ଥ । ବାଣୀବ୍ରତା ଆବେଗ ପ୍ରବଣ । ଦେଖିପାରନ୍ତି ନାହିଁ ପିଲାଙ୍କ ଉପେକ୍ଷା । ଛାତି ଭିତରେ ତାଙ୍କର ହା...ହା...କାର କରି ଉଠେ । ସେ ବଡ଼ ଝିଅଟିକୁ ଆଦର ଯତ୍ନ କରିଥାନ୍ତି । ତାର ଖାଇବା, ପଢ଼ିବା, ଅଳି ଅର୍ଦ୍ଦଳି ସବୁ ବୁଝନ୍ତି । ଏକପ୍ରକାର ସେ ଜନ୍ମରୁ ତାଙ୍କୁ ହିଁ ଆଦେରି ନେଇଥାଏ ।

ସମୟ ଯାଏ । ଅବସ୍ଥାର ଉନ୍ନତି ହୁଏନା । ବରଂ ସାଙ୍ଗସାଥୀ ବଢ଼ିଯାଇଥାଏ ଅଜୟଙ୍କର । ଏମିତିକି ବୟସ୍କ ଲୋକ କେତେଜଣ ତାଙ୍କ ପଛରେ ସବୁବେଳେ ବୁଲୁଥାନ୍ତି । ସେମାନେ ଗାଁ ବଜାରରେ ବସି ଖୁବ୍ ଗପ ଜମାନ୍ତି । ରାଜନୀତିକୁ ନେଇ । ରାଜନୀତିର ପ୍ରେକ୍ଷାପଟ କେତେ ମ୍ଳାନ, କେତେ ଧୂସର ତା' ଅନ୍ୟମାନେ ଅନୁଭବନ୍ତି । ଗାଁର ବୟସ୍କ ପୁରୁଷ, ମହିଳାମାନେ ଯେଉଁମାନଙ୍କ କୋଳରେ କାଖରେ ଅଜୟ ମଣିଷ ହୋଇଥିଲେ ସେମାନେ ଗଭୀର ଦରଦଭରା ଦୀର୍ଘଶ୍ୱାସ ପକାନ୍ତି । ଆହାଃ ! ଅଜୟପରି ପିଲାଟା ଏ ରାଜନୀତିରେ କାହିଁକି ପଶିଲା । କେଡ଼େ ସୁଧାର । ଟାଉଟରି କରିପାରେନା । ଗୁଣ୍ଡା ହୁଣ୍ଡା ନୁହଁ, କାହାକୁ ଧପେଇ, ମିଛକୁ ସତକରି ଏକାମ ସେକାମ କରିପାରିବନି ଯିଏ, କାହିଁକି ଏ ରାସ୍ତାରେ ପାଦ ଦେଲା ? ବୋହୂଟା କି ନାରଖାର ହେଉଛି ପଇସାଟିଏ ପାଇଁ । ବାପର ପେନ୍‌ସନ୍‌ରେ କେତେ ଚଳିବେ ଏତେବଡ଼ କୁଟୁମ୍ବ !

ଶାନ୍ତିଙ୍କର ନିଥରତା ଏକପ୍ରକାର ସହନଶୀଳତାକୁ ବଢ଼ାଇବାରେ ସାହାଯ୍ୟ କରିଥାଏ । ସବୁ କଥା ଭାବି ଯଦି ମନୋମାଳିନ୍ୟ, କଥା କଟାକଟି ହେଉଥାନ୍ତା, ତା' ହେଲେ ଆହୁରି ଘରଟା ନର୍କ ହୋଇ ଉଠନ୍ତା । ତାଙ୍କର ଶାନ୍ତ ସରଳ, ନୀରଳସ ଜୀବନ । ଗଣ୍ଡାଏ ରାନ୍ଧି ଖାଇପିଇ ବିଶ୍ରାମ ନେଇ ଆଗେଇଥାଏ ଜୀବନ । ଆସ୍ତେ ଆସ୍ତେ ସକ୍ରିୟ ହୋଇ ସେ ନିଜର ଜମିବାଡ଼ିକୁ ଆବୋରି ଧରିବାକୁ ଚେଷ୍ଟା କରନ୍ତି । କେଉଁଠି ବାଡ଼ ଭାଙ୍ଗିଯାଇଛି, ଗୋରୁ ପଶି ଖାଇ ଦେଲାଣି, ତାକୁ ଚିହ୍ନଟ କରିବା, ଏ ସବୁ କରନ୍ତି । ଗଛବୃଚ୍ଛ ମଧ୍ୟ ଲଗାନ୍ତି । ପାଣି ଦିଅନ୍ତି । ଗାଁର ଅସହିଷ୍ଣୁ ଲୋକଙ୍କ ସାଙ୍ଗେ କଥା ହୁଅନ୍ତି ନାହିଁ । ବୋଧହୁଏ ଗୋଟାଏ ନ୍ୟୁନତାର ଅନୁଭବ ଅଭାବକୁ ନେଇ ତାଙ୍କ ଭିତରେ ଥାଏ । ଯେଉଁମାନେ ତାଙ୍କୁ ଭଲପା'ନ୍ତି, ଅଭାବ ସତ୍ତ୍ୱେ ବି ସମ୍ମାନ ଦିଅନ୍ତି, ସେ ସେହିମାନଙ୍କ ସାଙ୍ଗରେ ମିଶି ସମୟ ବିତାନ୍ତି । ଭଲମନ୍ଦ କଥା ହୁଅନ୍ତି । ଥଟ୍ଟା ତାମସା ହସାହସି ହୁଅନ୍ତି ।

ଛୋଟିଆ କାଟିଆ ସାହାଯ୍ୟଟିଏ କରିଦେଇଛନ୍ତି ପୂର୍ବତନ ବିଧାୟକ । ଅଜୟଙ୍କର ଖୁବ୍ ସାଙ୍ଗ । ଭଦ୍ର ମଣିଷଟିଏ । ଘରକୁ ଆସନ୍ତି । ଏକା କଲେଜରେ ପଢୁଥିଲେ । ଅଜୟଙ୍କ ସୁଖ ଦୁଃଖ ଜାଣନ୍ତି । ଗାଁରେ ଦୁଗ୍ଧକେନ୍ଦ୍ରରେ ସୋସାଇଟି ସେକ୍ରେଟାରୀ କରିଥାନ୍ତି ଅଜୟଙ୍କୁ । ମାସିକ ଦେଢ଼ଶହ ଟଙ୍କା ମିଳେ । ଲିଟରେ କ୍ଷୀର ବି ମିଳେ । ପିଲାମାନେ ଖାଆନ୍ତି । ସେଥିରେ ଟାଣିହୋଇଯାଏ କିଛି । ଗାଁ କଥା । ଘରେ ତ ଧାନ, ଚାଉଳ ରହିଛି । ଛ' ଏକର ଜମିରୁ ଯାହା ଆସେ ସମସ୍ତେ ଚଳିଯା'ନ୍ତି । ବାଡ଼ିରେ ଶାଗ, ମୁଗ, କଖାରୁ କଦଳୀ ହୋଇ ଚଳିଯାଏ ପରିବା ଖର୍ଚ୍ଚ । ଯଦିଓ ଆଗ ପରି ଆଉ ଚାଷବାସ ନଥାଏ । ଯେମିତିଥିଲା ତାଙ୍କ ଜେଜେଙ୍କ ସମୟରେ । ପର୍ବତ ପ୍ରମାଣ ଆଳୁ ଗଦା ହେଉଥିଲା, କୋବି, ମୂଳା, ଶାଗ, କଖାରୁ କଦଳୀ, ଟମାଟୋ, ଫୁଟି, ବାଇଗଣ, ଚିନାବାଦାମ, ଫେସି, ମୁଗ, ସାରୁ, ଖଡ଼ାଶାଗ, ଲଙ୍କା ଏସବୁ ଅପର୍ଯ୍ୟାପ୍ତ ପରିମାଣରେ ଚାଷହେଉଥିଲା । ଗାଁ ହାଟରେ ବିକ୍ରି ହେଉଥିଲା । ଟେଣ୍ଡାରେ ପାଣି ବୁହାଇ କଣ୍ଟିଆ ଜମିରେ ଚାଷ କରୁଥିଲେ । ଏବେ ତା ନାହିଁ । ଜମିହୋଇଛି ପଡ଼ିଆ । ଦରକାରହେଲେ ଶାଗ ବିଡ଼ାଏ ଆଣିବାକୁ ପାଖ ଗାଁ ଚାଷୀଙ୍କ ପାଖକୁ ଯିବାକୁ ପଡ଼େ । ସେମାନେ ଚାଷୀ । ସବୁଜିମାରେ ଭର୍ତ୍ତି ତାଙ୍କ ଜମିଜୁମା । ଗାଡ଼ିଗାଡ଼ି ଶାଗ ବିକ୍ରିହେଉଥିଲା ଯେଉଁ ଜମିରୁ ସେ ହୋଇଛି ପଡ଼ିଆ । ଅଥଚ ପଇସାଟିଏ ପାଇଁ ଅଜୟଙ୍କର ତୀବ୍ର ଜୀବନ ଯନ୍ତ୍ରଣା । ବଡ଼ଲୋକ ହେବାର ମୋହରେ ଚାରିଆଡୁ ଶୂନ୍ୟତା । ସବୁ ପ୍ରାପ୍ତି ପଛରେ ଯେ ଅନେକ ପରିଶ୍ରମ ରହିଛି, ସେ ବିଦ୍ୟା ଅର୍ଜନ ହେଉ ବା ଧନ, ତା' ସେ ବୁଝନ୍ତି ନାହିଁ । ଗୋଟାଏ ପ୍ରକାର ନାହିଁନାହିଁର ମାନସିକତାରେ କେବଳ ସମୟ କଟାଇବା କଥା । କେଉଁଠି ଉନ୍ନତିମୂଳକ ଚିନ୍ତା ଭାବନା, କି ନିଜକୁ ଗଢ଼ିତୋଳିବାର ସକ୍ଷମତା ନାହିଁ ।

କୋପରେଟିଭ ସୋସାଇଟ୍‌ର ସାମାନ୍ୟ ଦେଢ଼ଶହ ଟଙ୍କା ମଧ୍ୟ ତାଙ୍କ ଜୀବନ ଧାରଣପାଇଁ ଖୁବ୍ ବଡ଼ । ହେଲେ ଆଜିକାଲି ସେଇଟା ନେଇ ହିଁ ବିବାଦ । ଜନତା ପାର୍ଟିର ଗୋଟାଏ ଗୁଣ୍ଡା କେତେଥର ଆସିଲାଣି ତାଙ୍କ ପାଖକୁ । ସେକ୍ରେଟାରୀ ପଦ ଛାଡ଼ିଦେବା ପାଇଁ ଧମକେଇ ଯାଇଛି । ଗୁଣ୍ଡା ଆସିଛି କଟକରୁ । ତାଙ୍କ ନେତା ସାରଥୀ ଜେନା ତାକୁ ପଠାଇଛି । ପ୍ରକୃତରେ ଘଟଣା କ'ଣ ସେ ଜାଣିଥିବେ । ଘରେ ସମସ୍ତେ ଚିନ୍ତିତ । ଗୁଣ୍ଡା ହାତରେ ଛୁରି, ବନ୍ଧୁକ ବି ଥାଇପାରେ । ତଳପଟ ଚିଙ୍ଗୁଡ଼ି ଚାଷକୁ ନେଇ ଯେଉଁ ଅବସ୍ଥା ସୃଷ୍ଟିହୁଏ ସେଥିପାଇଁ ଏମାନଙ୍କୁ ପୋଷୁଥାଏ । ସେଥିରୁ ଗୋଟାଏ ଆସେ । ଶାନ୍ତି ସବୁବେଳେ ଚିନ୍ତା ଆଉ ଭୟରେ

ସମୟ କଟାନ୍ତି । ଆଜିକାଲି ଯାହା ଅବସ୍ଥା, କ'ଣ ନାହିଁ କ'ଣ ହୋଇଯିବ ଯଦି, ପଇସା ନଥାଉ ପଛେ ମଣିଷଟା ରହିଥାଉ । ସତୁରୀ ବର୍ଷର ବାପ ଆଦିତ୍ୟ, ସେ ବି ସବୁବେଳେ ବିବ୍ରତ । ଗୁଣ୍ଡା ବୁଲୁଛି । ଧମକାଉଛି-କର ରିଜାଇନ୍ ସେ ସୋସାଇଟିରୁ । ତୁମେ ଶଳା କଂଗ୍ରେସିଆ ମାଡ଼ିବସିବ ସବୁ । ଗାଁ ହାଟରେ ସେ ଲଲ୍‌କାରିଲା । ଆ...ତୋ ମାଉଁସକୁ ଟିକିଟିକି କରି କୁକୁର ମୁହଁରେ ଫୋପାଡ଼ିବି । ଠିକ୍ ହିନ୍ଦି ସିନେମା ଭିଲେନର ପୋଷା ଗୁଣ୍ଡାପରି । ଅଜୟଙ୍କ ଥୋଡ଼ିକୁ ହଲେଇ ଦେଉଥାଏ । ବେଟା...ମୁହଁ ଉପରକୁ କର, କଲମ ଆଣେ, ଦସ୍ତଖତ କର । ଅଜୟ ବସିଥାନ୍ତି ସର୍କସର ଜୋକର ପରି । ଗାଁ ଲୋକ ଘେରି ଠିଆହୋଇଥାନ୍ତି । କେହିଜଣେ ହେଲେ ବାହାରି ଅଟକାଉ ନଥାନ୍ତି । ବରଂ ଶୁଣୁଥାନ୍ତି । ମଜା ପାଉଥାନ୍ତି ଏ ପ୍ରକାର ହିନ୍ଦୀ ସିନେମାପରି ଗୋଟାଏ କାହାଣୀର ଜୀବନ୍ତ ଛବି ତାଙ୍କ ସାମନାରେ ଘଟୁଥିବାରୁ । ହାୟରେ କା-ପୁରୁଷ ଗ୍ରାମବାସୀ । ଗୋଟାଏ ମଣିଷର ସମ୍ମାନ, ତା' ସହିତ ଜୀବନର ସଙ୍କଟ ରହିଛି, ତୁମେମାନେ ମଜା ଦେଖୁଛ । ଅଜୟ ସେମିତି ବସିଥାନ୍ତି ନିଃଶବ୍ଦରେ । ଗୁଣ୍ଡା ଟାଇମ୍ ଦେଲି କହି ଛାଡ଼ି ଦେଇଥାଏ ତାଙ୍କୁ ।

ମନେମନେ କ୍ଷୁବ୍ଧ ହୁଅନ୍ତି । ଅପମାନରେ ଶୁଖି ଯାଇଥାଏ ସେହି ଚେହେରା । ଆଜି ସେମାନେ କ୍ଷମତାରେ ନାହାନ୍ତିବୋଲି ଏଇ ପ୍ରକାର କୁଜି ଗୁଣ୍ଡାଙ୍କର ଉତ୍ପାତ ବଢ଼ି ଗଲାଣି । ନହେଲେ ଏବେ ତାଙ୍କୁ ଦେଖେଇ ଦେଇଥାନ୍ତେ ମାମୁଁଘର । କ'ଣ କରାଯିବ । ପୋଲିସ୍‌ବାଲା ତାଙ୍କ ହାତରେ । ଅଗତ୍ୟା ନୀରବତା ଛଡ଼ା ଅନ୍ୟ ଉପାୟ ନାହିଁ । ବରଂ ପୂର୍ବତନ ଏମ. ଏଲ.ଏ ଆସନ୍ତୁ । ତାଙ୍କୁ ଡକାଇଥାନ୍ତି ସେ ଏସବୁ ଘଟଣାର ସୁରାକ ପାଇ । ଗୁଣ୍ଡା ପୁଣି ଆସେ କିଛି ଦିନପରେ ତାଙ୍କ ଘରକୁ । ଖୋଜେ ତାଙ୍କୁ । ସତୁରୀବର୍ଷର ବାପ, ଉଚ୍ଚରକ୍ତ ଚାପ ରୋଗୀ, ହାର୍ଟ ମଧ୍ୟ କମ୍‌ଜୁର, ସେ ସାମନା ସାମନି ହୁଅନ୍ତି ଗୁଣ୍ଡାର । ଅଜୟ ଖାଲି ପାଦରେ ବାଡ଼ିପଟ ଦେଇ ଚପଲ ନପିନ୍ଧି ଲୁଙ୍ଗିପିନ୍ଧା ଅବସ୍ଥାରେ ପଳେଇଯା'ନ୍ତି ପାଖ ଗାଁରେ ଥିବା ପିଇସୀ ଘରକୁ । ସେଠି ପହଞ୍ଚି ମୁହଁ ଶୁଖାଇ କୁହନ୍ତି-କ'ଣ କରିବି ଅପା, ମୋ ବୋଉ କାନ୍ଦୁଥିବ । କେମିତି ଖବର ପହଞ୍ଚିବ ମୁଁ ତୁମ ଘରେ ଅଛି !

ପରେପରେ ଆସନ୍ତି ଏମ.ଏଲ.ଏ । ସେ ନରମପନ୍ଥୀ ଭଦ୍ରଲୋକ । ମାର୍ଜିତ । କୁହନ୍ତି-ଲେଖିଦେ ରିଜାଇନ୍ ଲେଟର । ଅଜୟ ଲେଖିଦିଅନ୍ତି ସେସବୁ । ବାସ୍ । ତାପରେ ସବୁ ଶାନ୍ତ । ସାମାନ୍ୟ ମାତ୍ର ଦେଢ଼ଶହ ଟଙ୍କାର ସମ୍ବଳ ମଧ୍ୟ

ଚାଲିଯାଏ ହାତରୁ । ଚାରିଆଡ଼େ ଅଭାବର କରାଳ ଛାଇ । ଗ୍ରାସୁଥାଏ ରାହୁ, କେତୁ ଗ୍ରାସ ପରି । ତା'ଠୁ ବା ନିସ୍ତାର କାହିଁ ତାଙ୍କର ? ସମୟ ଏମିତି ଚାଲିଯାଏ ହାତରୁ । ଏକଦିନ, ପ୍ରତିଦିନ ହୋଇ । ତାଙ୍କର ପଇସା ରୌଜଗାର ହେଉଛି କି ନାହିଁ ଅନେକ ପଚାରନ୍ତି । ଅଜୟଙ୍କର କ'ଣ ରୋଜଗାର ହେଲାଣି ? କେବଳ ଗୋଟାଏ କଥା । ନାହିଁ ରୋଜଗାର । ବାପର ପେନ୍‌ସନ ଟଙ୍କାରେ ଚଳୁଥାନ୍ତି ପାଞ୍ଚପ୍ରାଣୀ କୁଟୁମ୍ବ । ସେ କି ଗୋଟାଏ ଜୀବନ ! କି ସମ୍ମାନଥାଏ ସେହି ଦାନରେ, ଦୟାରେ । ଗୋଟାଏ ଘରର ବଡ଼ପୁଅ, ଅବସର ପ୍ରାପ୍ତ, ବୟସ୍କ ବାପା ପାଖରେ ଗୋଡ଼ଭାଙ୍ଗି ଠିଆହେବ, ପେନ୍‌ସନ୍‌ରୁ ନେଇ ଚଳିବ, ଚଳେଇବା ପରିବର୍ତ୍ତେ ! ବାପକୁ ମଧ୍ୟ ବ୍ଲଡ଼ ପ୍ରେସର ଔଷଧ କିଣିବାକୁ ବେଳେବେଳେ ପଇସା ନଥିବ । ଅଭିମାନରେ, ରାଗରେ ସେ ଔଷଧ ଖାଇବା ଛାଡ଼ି ଦେଇଥିବେ । ଧରାପଡ଼ିଲେ କହିବେ-ବୁଢ଼ା ହେଲେଣି ଆଉ କ'ଣ ଡ଼ର ? ଯାହା ହେବ ହେଉ । ସତରେ କ'ଣ ମଣିଷର ମୃତ୍ୟୁକୁ ଭୟନଥାଏ ! ତେବେ ଜୀବନପ୍ରତି ଅଭିମାନ ଆସିଲେ ମଣିଷ ମୃତ୍ୟୁକୁ ପରୱା କରେନା । ସେଥିପାଇଁ କ'ଣ ସେ ଏ ବୟସରେ ଖଟିବାକୁ ସ୍ଥିର କରିଦେଲେ ? ପଇସାର ଆବଶ୍ୟକତା ତାଙ୍କୁ କ'ଣ ବାଧ କରିଥିଲା ଏ ବୟସରେ ଏମିତି ଅସମ୍ମାନନୀୟ ଭାବେ ବଞ୍ଚିବାକୁ !



## (୭)

ବଡ଼ପୁଅକୁ ଦେଖିଲେ ଚିରକାଳ ଆଦିତ୍ୟଙ୍କ ଆଖି ଖୁସୀରେ ଝଲମଲ କରିଉଠେ । ସ୍ୱତଃପ୍ରବୃତ୍ତ ଆନନ୍ଦଟିଏ ଲାଖି ରହିଥାଏ ମନରେ । ଏମିତିଟାରେ ଗାଁରୁ କେହି ଲୋକ ଆସିଲେ ତାଙ୍କର ଖୁସୀର ସୀମା ନଥାଏ । ଚାଷବାସଠାରୁ ଆରମ୍ଭ କରି ଧାନ ଉଷୁଁଆ, ଚାଉଳ ପେଶିବା, ଚୁଡ଼ା ପେଷିବା ସବୁକଥା ପଚାରି ବସନ୍ତି । ଗାଁ ଲୋକଙ୍କୁ ଦେଖିଲେ ଖୁସୀରେ ଉଚ୍ଛୁଳି ଉଠନ୍ତି । ଗାଁ ର ମଣିଷ ସେ । ମାଟି, କାଦୁଅର ମଣିଷ । ସହରରେ ବୁଢ଼ାକାଳେ ଅଗତ୍ୟା ପଡ଼ିରହିଥିଲେ ବି ତାଙ୍କ ଆତ୍ମା ସବୁବେଳେ ଗ୍ରାମାଭିମୁଖୀ ତାହା ଜଣାପଡ଼େ ତାଙ୍କ କଥାରୁ । ଆବେଗରୁ । ଯେମିତି କି ସହରରେ ପଞ୍ଜୁରୀ ଭିତରେ ସେ ବନ୍ଧା ହୋଇ ରହିଛନ୍ତି । ମୁକ୍ତ ନୁହଁନ୍ତି । ସବୁବେଳେ ଗ୍ରାମଗତ ପ୍ରାଣ ।

ପୁଅକୁ ଦେଖି ଖୁବ୍ ଖୁସୀ ହୋଇଛନ୍ତି ସେ । ସୁବବେଳେ କର୍ମ ତତ୍ପର, ଚଳଚଞ୍ଚଳ ମଣିଷ ଆଦିତ୍ୟ । ଜୀବନର ଏତେ ଦୁଃଖ, ନୈରାଶ୍ୟ, ଅଭାବ ଅନାଟନର ମୁହାଁମୁହିଁ ହୋଇ ମଧ୍ୟ ହାରିଯାଇ ନାହାନ୍ତି । ସବୁବେଳେ ହସ ମୁଖର । ବଡ଼ପୁଅକୁ ଛୋଟ ଭାଇ, ଭଉଣୀ ଯେତେ ଛିଗୁଲେଇଲେ , ତିରସ୍କାର କଲେ ବି ସେ ସବୁ ଶୁଣନ୍ତି । ଚୁପ୍ ରହନ୍ତି । ବରଂ ବିରକ୍ତ ହୋଇପଡ଼ନ୍ତି-କାହିଁକି ଗୋଟାଏ ପିଲା ବିରୁଦ୍ଧରେ ସମସ୍ତେ ଅସୂୟା ପ୍ରଦର୍ଶନ କରୁଛ ବୋଲି । ଯଦି ଗୋଟାଏ ଅଯୋଗ୍ୟ ହେଲା-ତାକୁ ଛାଡ଼ିଦଅ । ନହେଲେ କିଛି ସାହାଯ୍ୟକର ସେ ଉଠିଯାଉ ।

ତାଚ୍ଛଲ୍ୟରେ ହସନ୍ତି ଅନ୍ୟାନ୍ୟ ଭାଇ, ଭଉଣୀ । ଆଦିତ୍ୟ ବରଂ ଆହୁରି ତାଙ୍କ ଆଯୋଗ୍ୟତାକୁ ଘଣ୍ଟ ଘୋଡ଼ାଉଛନ୍ତିବୋଲି ଯୁକ୍ତି କରନ୍ତି । ପୁଣି ସାହାଯ୍ୟ-ତୁମେ ଏତେ ଟଙ୍କା ଅଜାଡ଼ି ଦେଲ ପୁଅହେବ କଣ୍ଟ୍ରାକ୍ଟର, କୋଠା ବାଡ଼େଇବ, ଆମକୁ ଦେଖିବ, ହେଲା କ'ଣ ? ବୋଉର ସୁନାଗହଣା ନେଇ ବନ୍ଧା ପକାଇଲା, ଫେରାଇଲାନି । ପୁଣି କହୁଛ ସାହାଯ୍ୟ !

ଆଦିତ୍ୟ ସେକଥା ଜାଣନ୍ତି । ତାଙ୍କ କଥାକୁ କେହି ଶୁଣିବେନି । ବରଂ ଅବଦମିତ ଗୋଟାଏ ଉତ୍ତ୍ୟକ୍ତ ଦ୍ୱିରୁକ୍ତିଭାବ ଅଜୟଙ୍କ ଉପରେ ସମସ୍ତଙ୍କର । ସେହିଁ

ଯେପରି ଗୋଟାଏ କଳଙ୍କିତ ନାୟକହୋଇ ତାଙ୍କ ବଂଶର ଇତିହାସରେ ଠିଆ ହୋଇଛନ୍ତି । ସମସ୍ତେ ଧରିନେଇଛନ୍ତି ତାଙ୍କରିପାଇଁ ଆଦିତ୍ୟଙ୍କର ମାନସିକ ଚାପ, ଆର୍ଥିକ ଚାପ ବେଶୀ ହୋଇଯାଇଛି । କାହିଁକି ସେ ପୋଷିବେ ବୁଢ଼ା ବୟସରେ ତାଙ୍କର ପାଞ୍ଚପ୍ରାଣୀ କୁଟୁମ୍ବଙ୍କୁ !

ଆଦିତ୍ୟ ବାପ । ବାପର ହୃଦୟ କ'ଣ ସେମାନେ ବୁଝିବେ ? ଏତେ କଠୋର ସେ ଏଯାଏ ହୋଇପାରି ନାହାନ୍ତି । କଟୁକ୍ତି କରିଆସେ ନାହିଁ ତାଙ୍କୁ । ସେ ରାଗନ୍ତି ସତ, ହେଲେ ଭାଷା ଫୁଟନ୍ତି ନାହିଁ । କ'ଣ ବା କହିବେ ? ସେ ଭାବନ୍ତି ସବୁ ଭାଗ୍ୟର ଦୋଷ । ପିଲାଟା ଭାଗ୍ୟରେ କିଛି ଜୁଟିଲାନି । କେଉଁଥିରେ ସେ ସଫଳ ହୋଇପାରିଲାନି । ଏମିତି କି ଏଇ ସାଧାରଣ ରାଜନୀତିରେ ସରପଞ୍ଚ ଭୋଟଟାଏ ବି ଜିତି ପାରିଲାନି । ସେ ଜାଣନ୍ତି ତାଙ୍କ ପୁଅଟି ନିରୀହ । ମୂଳରୁ ବାଟ ଭୁଡ଼ି ଯାଇଛି । ଆଉ କୋଡ଼ିଏ ବର୍ଷ ପରେ ସେ ବା କେଉଁ କାମ କରିପାରିବ ?

ସେ ଦୟାର୍ଦ୍ର ହୃଦୟ । ପେନ୍‌ସନ ପାଇଲେ ଖୁସୀରେ ଦିଅନ୍ତି ଦୁଇଶହଟଙ୍କା ଖର୍ଚ୍ଚ କରିବାକୁ । ଯାହା ହେଲେ ବି ବଡ଼ ପୁଅ ତ ! କେତେ କଷ୍ଟରେ ସେ ବଞ୍ଚିଛି ପିଲାଦିନେ ବସନ୍ତ ଦାଉରୁ ।

ଗାଁର ଖବର ବୁଝିବୁଝୁ ଅଜୟ କହିଲେ-ୟା ଭିତରେ ଘର ଖଣ୍ଡିଏ କଲେ ଭଲ ହୁଅନ୍ତା । ସେ ଭଙ୍ଗାଘରେ ଆଉ ରହିବେନି । ଲୁଣି ଉଠୁଛି ତଳୁ । ଯେତେ ମରାମତ କଲେ ବି ଯାହା ସେଇଆ ।

ପ୍ରକୃତରେ ତାଙ୍କ ଭାଗରେ ଗୁହାଳ ଘରଟି ପଡ଼ିଛି । ଆବାହମାନ କାଳରୁ ସେଠି ଗୋରୁ ମୂତି ଲୁଣା ହୋଇଯାଇଛି । ସେହି ଘରକୁ ନେଇ ଯେତେକ ଅସନ୍ତୋଷ । ଘର ଗୋଟାକର ଜିନିଷ ଭିର୍ଜ୍ଣ ହୋଇ ରହିଛି । କେଜାଣି କ'ଣ ହୋଇଛି, ନାଗସାପଙ୍କର ଉତ୍ପାତ ବଢ଼ିଯାଇଛି । ଗୋଟାଏ ଚାଳରୁ ଖସି ପଡ଼ିଥିଲା ଶାନ୍ତିଙ୍କ ମଶାରୀ ଉପରେ । ଭୟରେ, ଆତଙ୍କରେ ସେ ଦିନ ବିତାଉଛନ୍ତି ତା' ଭିତରେ । କୁଆଡ଼େ ଯିବେ, କାହାଘରେ ବା ଶୋଇବେ ? ନୂଆ ବୋହୂ ହୋଇ ଆସିବାବେଳେ ଖୁଡୁତାଶୁରଙ୍କ ଭାଗରେ ପଡ଼ିଥିବା ପକାଘରେ ଶୋଉଥିଲେ । ହେଲେ ଖୁଡ଼ୀଶାଶୁଙ୍କର ଆକ୍ଷେପରେ ଗୋଟାଏ ମାସ ପରେ ସେ ବାହାରି ଆସିଥିଲେ । ଏବେ କେଉଁଠିକୁ ବା ସେ ଯିବେ ? ସାଙ୍ଗରେ ଛୁଆ ଦୁଇଟା । ଏମିତି ଏକ ପରିବେଶରେ ସେମାନେ କାଟନ୍ତି ପ୍ରତିଟି ମୁହୂର୍ତ୍ତ ।

ଆଦିତ୍ୟଙ୍କ ମନର ଗଭୀରତାରେ ଘରଟିର ପ୍ରଚଣ୍ଡ ସ୍ୱପ୍ନ । ଗାଁରେ ଘର ଖଣ୍ଡେ କରିବେ । ହେଲେ ସମ୍ବଳକଥା ସେ ଭାବନ୍ତି ନାହିଁ । ଘର କରିବାର ସ୍ୱପ୍ନରେ

ସେ ମସଗୁଲଥାନ୍ତି । କଥାରେ କଥାରେ ବେଳେବେଳେ ଘରକଥା କହି ହସିଦିଅନ୍ତି । ମୁହଁରୁ ତାଙ୍କର ସେହି ଝଲସ ଦେଖିଲେ ମନେହୁଏ ସତେଅବା ଘରଟା ହୋଇଯାଇପାରିବ ।

ଅଜୟ ମୁହଁ ଶୁଖାଇ ଘର କରିବା କଥା କୁହନ୍ତି । କେତେବା ଆତଙ୍କରେ ଜୀବନ ବିତାଇବେ । ସେ ମଧ୍ୟ ବଡ଼ବଡ଼ ସ୍ୱପ୍ନ ଦେଖନ୍ତି । ସେହି ସବୁ ସ୍ୱପ୍ନର ସାକାରତାକୁ କହି ହୁଅନ୍ତି । ଅବଶ୍ୟ ବାପା, ମା ଙ୍କ ଆଗରେ । ଆଦିତ୍ୟ ମଧ୍ୟ ସେସବୁ ଶୁଣି ଘଡ଼ିଏ ହେଉପଛେ ଖୁସୀ ହୋଇଯା'ନ୍ତି । ତାଙ୍କ କଥାରେ ନିଜର ଚିନ୍ତା ସାମିଲ କରି ନିଅନ୍ତି । ଘର ଖଣ୍ଡେ ମଣିଷପାଇଁ ବଡ଼ ସମ୍ମାନର ବିଷୟ । କେତେଅବା ପଡ଼ିଥିବେ ସେହି ଗୁହାଳଘରେ । ଆଦିତ୍ୟ ଅତ୍ୟନ୍ତ ଖୁସୀହୋଇ ଅଜୟଙ୍କୁ କହିଲେ- ମୋର ବଡ଼ ଇଚ୍ଛା ଘର ଖଣ୍ଡିଏ ଗାଁରେ ହେବ । ଏଇଟା ସହର । ଏଠି ସମସ୍ତଙ୍କର ତ କୋଠା । କାହା କୋଠାକୁ କିଏ ଚିହ୍ନେ । ଗାଁରେ ଘର ଖଣ୍ଡିଏ କଲେ ସମସ୍ତେ ଜାଣିବେ ତ-ହଁ ଏଇଟା ଅମୁକ ଲୋକର ଘର । କେତେବେଳେ କେଉଁ ଫଙ୍କସନ୍‌ରେ ଲୋକେ ଏକାଠି ହେଲେ ଶୋଇବାକୁ ଜାଗା ମିଳିବ । ଦିନେ, ଦୁଇଦିନ ରହିପାରିବେ ଗଲେ । ଏବେ ତ ଘର ନଥିବାକୁ ଏକାଦିନକେ ଫେରି ଆସୁଛନ୍ତି । ହଉ ତୋ ଇଚ୍ଛା ପୂର୍ଣ୍ଣ ହେଉ । ଭଗବାନ ତୋତେ ସହାୟ ହୁଅନ୍ତୁ ।

ଅଜୟ ଘର କରିବାର ଦୁର୍ବାର ବାସ୍ନାରେ ବିମୋହିତ । ଆଗାମୀ ମାସଠାରୁ ଇଟା କେମିତି ପଡ଼ିବ ସେହି ଚିନ୍ତାରେ ଖୁବ୍ ସକ୍ରିୟ । ତିରିଷ ହଜାର ଇଟା ପଡ଼ିବ । ଇଟା ଉଠିଲାପରେ ଏ ବର୍ଷଟା ମୂଳଦୁଆ ମାଡ଼ି ରଖିବେ । ଆସ୍ତେଆସ୍ତେ କାନ୍ଥ ଉଠିବ ଏବଂ ପରିଶେଷରେ ଛାତ । ଏଇ ହିଁ ତାଙ୍କର ପରିକଳ୍ପନା ।

ବଡ଼ ଆଶ୍ଚର୍ଯ୍ୟ । ଗାଁରେ ଘର ଖଣ୍ଡିଏ କଲେ ବେଶୀ ଖର୍ଚ୍ଚ । ସବୁ ଦୂରରୁ କିଣାହୋଇ ଯିବ । ବାଲି, ରଡ଼, ଗୋଡ଼ି, ସିମେଣ୍ଟ ସବୁର ଟ୍ରାନସପୋରଟେସନ ଅଧିକା ଲାଗିବ । କେଉଁଠୁ ଭରଣା କରିବେ ଅଜୟ ! ଏକଥା ମଧ୍ୟ କେମିତି ଚିନ୍ତା କଲେନାହିଁ ଆଦିତ୍ୟ । ପଚାରିଲେ ନାହିଁ କେଉଁଠୁ ଏତେ ଟଙ୍କା ଯୋଗାଡ଼ କରିପାରିବ ସେ !

ତଥାପି ଅଜୟଙ୍କ ମୁଣ୍ଡରେ ପଶିଛି ଘର କରିବାର ସ୍ୱପ୍ନ । ସ୍ୱପ୍ନ ହିଁ ମଣିଷକୁ ବଞ୍ଚାଏ । ପାଇବା ନପାଇବାର ସୀମାରେଖା ଡ଼ିଆଁଇ କିଛି ଘଡ଼ି ବଞ୍ଚିବାର ଆନନ୍ଦ ଦିଏ । ଅଜୟଙ୍କୁ କେତେଜଣ କହିଲେଣି ଯଦି ଘର କରିବ ଦୁଇଟା ବଖରା କରିଦିଅ । ଏତେ ଲମ୍ବାଅନି ପ୍ଲାନ । ଦୁଇଟା ଘରକରି ବାରଣ୍ଡାରେ କିଚେନରୁମ୍

ବାହାର କରିଦିଅ । ଅଳ୍ପ ଖର୍ଚ୍ଚରେ ହୋଇଯିବ । କେଜାଣି କାହିଁକି ଅଜୟଙ୍କ ମୁହଁ ଶୁଖିଯାଏ ଏ ଉପଦେଶରେ । ଉପଦେଶ ଦେଉଥିବା ଆଉ ଶୁଣୁଥିବା ଲୋକଟି ଭିତରେ ଗୋଟାଏ ଆତ୍ମସମ୍ମାନବୋଧର ସୂକ୍ଷ୍ମ ସମସ୍ୟା ଲୁଚିରହିଥାଏ । କହୁଥିବା ଲୋକଟି ପାଖରେ ଥାଏ ଦମ୍ଭ । ଅନ୍ୟର ନପାରିବା ପଣିଆ ପ୍ରତିଥାଏ ଅବଜ୍ଞା ଭାବ । ସେଇଟା କେବଳ ଏ ଧନପାଇଁ । ଅଜୟ ତା' ବୁଝନ୍ତି । ତଳକୁ ମୁହଁପୋତି ଦିଅନ୍ତି । କୁହନ୍ତି-ଦୁଇଟା ଘର କ'ଣ ହେବ । ପୁରା ପ୍ଲାନରେ ଘର ହେବ । ଗୋଟାଏ ଛାତତଳେ ଯେମିତି ସହରରେ ହେଉଛି । ହେଲେ କଳ୍ପନା, ସ୍ୱପ୍ନଠାରୁ ବାସ୍ତବତା ଯେ ଅନେକ ଦୂର, ଆଉ ସଂପୂର୍ଣ୍ଣ ଅପହଞ୍ଚ ତାଙ୍କ ପାଇଁ ସେ ଭାବନ୍ତି ନାହିଁ । ଛ' ଲକ୍ଷ ଟଙ୍କା କମାଇବା ତାଙ୍କ ପାଇଁ ଯେ ମରିଚିକା ସେକଥା ଅନ୍ୟମାନେ ବୁଝନ୍ତି । ହେଲେ ସେ ଗ୍ରହଣ କରନ୍ତି ନାହିଁ । ମଣିଷର ମନ । ମନରେ ହିଁ ଲାଗିଥାଏ ଲଗାମହୀନ ପକ୍ଷୀରାଜ ଘୋଡ଼ା । ସେ ସବୁ ଚାହେଁ । କଳ୍ପନା କରିପାରେ । ହେଲେ କେଉଁ ଖଞ୍ଜରେ ଭୂଲୁଣ୍ଠିତ ହେଉଥାଏ ଅଜୟଙ୍କ ଆତ୍ମ-ସମ୍ମାନ ଏ ପ୍ରକାର କମେଣ୍ଟରେ, ତା' ସେ ଅନୁଭବନ୍ତି । ଆଉ ଦୟା କରୁଥିବା ଲୋକ ତ କମ୍ ନଥାନ୍ତି ତାଙ୍କ ଚାରି ପାଖରେ ।

ତଥାପି ଅଜୟ ପଛକୁ ଚାହାନ୍ତି ନାହିଁ । କାହାର କଟୁ ମନ୍ତବ୍ୟରେ ବିଚଳିତ ନହୋଇ ଆଗେଇ ଯା'ନ୍ତି ଇଟା ପକାଇବାକୁ । କେଉଁଠୁ ଆଣି ଖର୍ଚ୍ଚ କରିଥାନ୍ତି ତା' ସେ ବୁଝିଥାନ୍ତି । ଚିଠି ଲେଖନ୍ତି ସାନ ଭାଇ, ଭଉଣୀକୁ କିଛି ଟଙ୍କା ସାହାଯ୍ୟ କରିବାକୁ ଏ କାମରେ । ଭଉଣୀ ହସିଦିଏ । ଗୋଟାଏ କାମପାଇଁ ପୁରା ଛ' ଲକ୍ଷଟଙ୍କା ଖର୍ଚ୍ଚ । ଏଇ ସାମାନ୍ୟ ଆରମ୍ଭରେ କ'ଣ ହୋଇପାରିବ ? ବେକାର ଇଟା ଗୁଡ଼ିକ ପଡ଼ିପଡ଼ି ଖତ ହେବାକଥା । ସେ ଏହିକଥା ଭାବି ଚୁପ୍ ହୋଇଯାଏ । ଏକଥା କୁହେ ବାଣୀବ୍ରତାଙ୍କୁ । ହେଲେ ବାଣୀବ୍ରତା ପୁତ୍ର ସ୍ନେହରେ ଅନ୍ଧ । ସେ ମାନନ୍ତି ନାହିଁ ଝିଅର ସଦାସର୍ବଦା ଏଇ ନାହିଁନାହିଁର ଖିଆଲରେ ବଞ୍ଚିଥିବା କଥାଗୁଡ଼ିକୁ । ସେ ଦମ୍ଭ ଦେଖାନ୍ତି । କୁହନ୍ତି କାହିଁକି ହେବନି । ଚେଷ୍ଟା କରୁଛିତ । ତୁମ୍ଭେମାନେ ତା'ର ସବୁକାମକୁ ମୂଳରୁ ନାପସନ୍ଦ କାହିଁକି କରୁଛ ? ଯାହାହେଲେ ବି ବଡ଼ଭାଇ । ରୋଜଗାରିଆ ନହେଲା ବୋଲି କ'ଣ ତାକୁ ଅପସନ୍ଦ କରିବ ? ସମସ୍ତେ କିଛିକିଛି ଦିଅ । ତୁମର ଇଚ୍ଛା ହେଉଛି ଯଦି ସାହାଯ୍ୟ କର । ନ ହେଲେ ନ ଦିଅ । ଏତେ ଗୋଟାଏ ଖୁଣୁଛ କାହିଁକି ?

ବାଣୀବ୍ରତାଙ୍କ ଅଭିମାନିଆ ଭାଷାରେ ଅର୍ପିତା ନୀରବ ହୋଇଯାଇଥିଲା ସେଦିନ । ଅବୁଝା ପିତାମାତା । କ'ଣ କହିବ ସେ । ସାନ ଭାଇଟି ବଡ଼ ଭାଇର

ପତ୍ରପାଇ ଡରିଗଲା । ସେ ଜାଣେ ଏ ଟଙ୍କାର କୌଣସି ମୂଲ୍ୟ ନାହିଁ । ମନା କରିପାରେନା । ନୂଆ ଚାକିରି କରିଛି । ଭୟରେ ହଜାର ଟଙ୍କା ପଠାଏ । ଅଥଚ ଦ୍ୱିରୁକ୍ତି ଭାବ ତା' କଥାରୁ ବୁଝାଯାଏ । ସେ ପ୍ରତ୍ୟାଖାନ କରି ପାରେନା । ଭଉଣୀ କିନ୍ତୁ ପ୍ରତ୍ୟାଖାନ କରିଦେଇ ପାରନ୍ତି । ଅପ୍ରିୟ କଥାକୁ ସାମ୍ନା ସାମ୍ନି ହୋଇ । ସବୁବେଳେ ବଡ଼ ଭାଇଙ୍କର ଏଇ ଅଦୂରଦୃଷ୍ଟି ପଣିଆକୁ ସେ ପସନ୍ଦ କରେନି । ତା ଭିତରେ ଗୋଟାଏ ତୀବ୍ର ଦହନ ଲାଗି ରହିଥାଏ । ସେ ଚାପି ହୋଇପଡ଼େ । ଭାରାକ୍ରାନ୍ତ ହୋଇଯାଏ । ମୁହଁରେ ବି ସମ୍ମାନ ଦିଏ ନାହିଁ ଏସବୁ ଅଦୂରଦୃଷ୍ଟି ପଣିଆ କାମରେ । ସେଥିପାଇଁ ବହୁ ଲୋକ କୁହନ୍ତି-ତୋ'ର ତ ବଡ଼ଭାଇ ସାଙ୍ଗରେ ପଡୁନି । ପ୍ରକୃତରେ କି ଉତ୍ତର ସେ ସେମାନଙ୍କୁ ଦେବ । କାହା ସାଙ୍ଗରେ କାହାର ପଡ଼େ । ଲାଗେ ସମସ୍ତେ ସମସ୍ତଙ୍କ ହାତଧରି ଠିଆହେବାପରି । କିନ୍ତୁ ସମସ୍ତେ ଗୋଟାଏ ଗୋଟାଏ ବିଚ୍ଛିନ୍ନ ଦ୍ୱୀପ । ଆଉ ସେ ତ କାହିଁ ଦୂର ସାଗରର ନିଃସଙ୍ଗ, ପରିତ୍ୟକ୍ତ ଦ୍ୱୀପ ଖଣ୍ଡେ । ତା' ସାଙ୍ଗରେ କାହାର ସଂପର୍କ କ'ଣ ଥାଏ ? କେବଳ ତା'ର ରାଗ, ଅଭିମାନର ଛାଇ ପଡ଼ିଯାଏ ବାଣୀବ୍ରତାଙ୍କ ଉପରେ । ସେଥିପାଇଁ କେହି ତା କଥାକୁ ଗୁରୁତ୍ୱ ଦିଅନ୍ତି ନାହିଁ । ସେ ତା ବୁଝେ । ପୁଣି ଫେରିଯାଏ ନିଜର ଦୁନିଆକୁ । ସେହି ବିଚ୍ଛିନ୍ନ ଦ୍ୱୀପକୁ । ଯାହା ଭିତରର ସବୁଜିମା ହେଉ ବା ଧୂସରତା ହେଉ ନେଇ ସେ ବଞ୍ଚିଥାଏ । ଅପରିଣାମଦର୍ଶୀ ବଡ଼ଭାଇ ଯେ ଜୀବନଠାରୁ ପଳାତକ ଆଉ ସମୟେ ସମୟେ ସଂସାରର ଦାୟିତ୍ୱନେଇ ଗୋଟାଏ ସମ୍ମାନଜନକ ଜୀବନ ଜୀଇଁବାକୁ କଳ୍ପନା କରିଛନ୍ତି, ତାହାହିଁ ତା ପାଇଁ ଯଥେଷ୍ଟ, ସେ କଥା ଭାବେ ଅର୍ପିତା । ଘର ନହେଲା ନାହିଁ, ଦୁଇପାଦ ଆଗେଇ ଯାଇ ପାରିଲେ ତ ଇଟାଭାଟିଟା ପକାଇ । ପ୍ରକୃତରେ ଇଟା ହିଁ ଇଟାହୋଇ ପଡ଼ିରହେ ଆଉ ଆସ୍ତେଆସ୍ତେ ହୋଇଯାଏ ମାଟି । ତା ମଧ୍ୟ ସମୟ ଦେଖେ । ଗାଁ ବାଲା ଦେଖନ୍ତି । ଚୁପ୍ ହୁଅନ୍ତି ବାଣୀବ୍ରତା, ଆଦିତ୍ୟ ।

ବେଳେବେଳେ ଅର୍ପିତା ଗାଁକୁ ଯାଏ ! ପଡ଼ିଶାଘର ସାନ ମା' ବାରଣ୍ଡାରେ ବସିପଡ଼େ । କୋଠାଘର କରିଛନ୍ତି ସେ । ବେଶ ସୁଦୃଶ୍ୟ ଆଉ ବଡ଼ ! ପାଖରେ ବସି ଦୁଃଖ ସୁଖ ହୁଏ । ସେ ସମୟର ଲୋକ । ସ୍ନେହୀ, ଦରଦୀ, ହୃଦୟବାନ । ଆଉ ପକାଘର ସଂସାରୀ । ସଂସାରର ତୀକ୍ଷ୍ଣ ଅଣୀ ଧାରରେ ଚାଲିଚାଲି ଆଜି ଯେଉଁମାନେ ସମୟ ଗର୍ଭରେ ନିଃଶବ୍ଦ ହୋଇ ବସିଛନ୍ତି । ଭାବିପାରେନି ସେ । ସେମାନଙ୍କର ଥିଲା କେତେ ଶୃଙ୍ଖଳିତ ଜୀବନ । ସାନ ଜେଜେ ଚାଟଶାଳୀ କରିଥିଲେ । ଖୁବ୍ କଡ଼ା ମାଷ୍ଟର । ଆଉ କ୍ଷଣକୋପୀ । ରାଗିଲେ, ହାତପାପୁଲିକୁ ବେତରେ ଫଟାଇ ଦିଅନ୍ତି । ଅଙ୍କ ଭୁଲକଲେ ଜାଣ ବେଳା ଖରାପ ପଡ଼ିଲା । ନୋଳା ଫଟାଇ ଦେବେ । ସାମାନ୍ୟ ଚାଟଶାଳୀର ମାଷ୍ଟର । ଅଥଚ୍ କେତେ ବଡ଼ ଆଉ

ମହତ ଉଦ୍ଦେଶ୍ୟ ନେଇ ମଣିଷ ଗଢ଼ିବାର ଯନ୍ତ୍ରଟିଏ, ଲାବୋଲାଟୋରୀଟିଏ ଥିଲା ସେହି ଚାଟଶାଳୀ । ଆଜି ସେ ଆଶ୍ଚର୍ଯ୍ୟ ହୁଏ । ପିଲାଦିନେ ଭାବୁଥିଲା ସାନ ଛେଳେଙ୍କର ପଇସା ନାହିଁ । କିନ୍ତୁ ଭାବିପାରିନଥିଲା ଗୋଟିଏ ଶିକ୍ଷକର ମହତର ଦାନକଥା । ତାଙ୍କର ଶୃଙ୍ଖଳିତ ପାଠ ପଢ଼ାଇବାର ଢଙ୍ଗକଥା । ଠିକ୍ ସମୟରେ ନଆସିଲେ ବେତ ଖାଇବାର ଯର୍ଥାର୍ଥତା, ମହତ୍ୱ କଥା । ଏବେ ଭାବୁଛି । ମଣିଷ ପଣିଆର କେମିତି ଅବକ୍ଷୟ ହୋଇଛି । କେମିତି ସମୟରେ ପହଞ୍ଚୁ ନାହିଁ ଶିକ୍ଷକଟିଏ ସ୍କୁଲରେ । ଏମିତି କି ଦୂର ଦୂରାନ୍ତରେ ପୋଷ୍ଟିଂ ପାଇଲେ ଅନ୍ୟ ବେକାରୀ ପିଲାଟିଏ ଯୋଗାଡ଼ କରି ଶହେ/ଦୁଇଶହ ଟଙ୍କା ଭଡ଼ାଦେଇଦେଲେ ସେ ତା' ପାଇଁ ପାଠ ପଢ଼ାଇ ଦେଉଛି । ମାଷ୍ଟରଟି ଗାଁରେ ରହି ନିର୍ଦ୍ୱନ୍ଦରେ ଅୟସ ଜୀବନ ବିତାଉଛି । ଦୀର୍ଘଦିନ ଅନୁପସ୍ଥିତ ରହି ଗାଁରେ ପୂତିଗଂଧମୟ ରାଜନୀତିରେ ମାତିଛି । କପି ଯୋଗାଇ ପଇସା ନେଉଛି । କି ଭୟଙ୍କର ଆଜିର ସମସ୍ୟା । କେମିତି ଗଢ଼ା ହେବେ ଏ ଦେଶର ଉତ୍ତର ଦାୟାଦ ?

ସାନ ମା' ରୋଷେଇବାସରେ ଖୁବ୍ ପଟୁ । ସୁସ୍ୱାଦୁ ତରକାରୀ କରି ଖାଇବାକୁ ଦିଏ ବୋଲି ଗାଁରେ ନାମ ଅର୍ଜନ କରିଥିଲା । ବେଳେବେଳେ ଜେଜେ ତରକାରୀ ମଗାଇ ଖା'ନ୍ତି ସାନ ମା' ଘରୁ । ପରିଷ୍କାର, ରୁଚି ସମ୍ପନ୍ନ ଗୋଟାଏ ଜୀବନର ଧାରା । ପଇସା ନଥିଲେ ବି କ'ଣ ଅଛି ? ବଂଚିବାରେ କିଛି ନ୍ୟୁନତାବୋଧ ନାହିଁ । ବରଂ ଜୀବନର ପ୍ରବାହରେ ନିଜକୁ ସାମିଲ କରି ବଞ୍ଚିବାର କଳାଟିକକ ଜଣାଥିଲା ।

ଆଜିକାଲି ସେ ନଇଁନଇଁ ଆସେ । ସଫା, ପରିଚ୍ଛନ୍ନ ଶାଢ଼ୀ ପିନ୍ଧିଥାଏ । କୁହେ ଏତେକଥା ତ କରୁଛୁ, ତେବେ ମା' ଘର ଖଣ୍ଡକ ଯେମିତି ଗାଁରେ ହେବ ବୁଝୁ । ଅଜୟ ତ ମଣିଷ ହେଲାନି । ଆଉ କେତେ ଦିନ ଏମିତି ପଡ଼ିବ ।

ସେ ବୁଝିପାରେ, ବିକଳାଂଗ ଏଇ ଘରର ଦୃଶ୍ୟ, ଅଜୟଙ୍କର ଏଇ ଘରେ ଜୀବନ ଯାପନ ଯେମିତି ଗାଁର ସମସ୍ତଙ୍କୁ ଚାପ ପକାଉଛି । ନିଶ୍ଚୟ ଅଜୟଙ୍କର ମାନସିକ ଯନ୍ତ୍ରଣାର ଛାପ ପ୍ରକାଶିତ ହୋଇଛି ବିଭିନ୍ନ ଲୋକଙ୍କ ପାଖରେ । ଦୀର୍ଘ ଶ୍ୱାସର ଛୁଆଁ ସେମାନଙ୍କୁ ଛୁଇଁଛି । ତା' ମନର ଦାରିଦ୍ର୍ୟ ପରିପ୍ରକାଶ ତା' ହେଲେ ଏ ଗାଁର ବାୟୁ ମଣ୍ଡଳରେ ନିନାଦିତ ହୋଇଛି । ହେଲେ ସେ ବା କ'ଣ କରିପାରେ ? ସମୟର ବାଲିଶଯ୍ୟାରେ ସେ ଯେ ଶଗଡ଼ ଟାଣିଟାଣି ଆଜି କେତେ କ୍ଳାନ୍ତ, ତା' ଏମାନେ କ'ଣ ବୁଝିପାରିବେ ? ତେଣୁ ଅଗତ୍ୟା ସାନମା'କୁ ବୁଝାଇ ଦେବାକୁ ପଡ଼ିଥିଲା ତା'ର ଦରମା କେତେ, କ'ଣ କ'ଣ କଟୁଛି । ଯାହା ହାତରେ ଆସୁଛି ସେ

ନିଜେ ଚଳିବ, ଆଉ କେତେ ଏମିତି ବଳିବ ଯେ ଘର କରିହେବ ? ହେଲେ ସାନମା' କିଛି ବୁଝିଲାନି । ଗ୍ରହଣ କଲାପରି ଲାଗିଲାନି । ଶେଷକୁ କହିଲା-ଯେମିତି ଯାହା କର ପଛେ ଘର ଖଣ୍ଡିଏ କର । ତା' କଥାର ଓଜନ ବାରିହୋଇ ପଡୁଥିଲା । ତା' ମୁହଁ ଗମ୍ଭୀର ହୋଇଯାଇଥିଲା ।

ଏହିପରି ସମୟରେ ଶଙ୍କରା ବୁଢ଼ା ପହଞ୍ଚିଲେ । ବୟସ ସତୁରୀଯାଏ ହେବ । କିନ୍ତୁ କ'ଣ ସବୁ ଜପତପ କରନ୍ତି ଯେ ଅଜୟଙ୍କର ଅଗାଧ ବିଶ୍ୱାସ ତାଙ୍କ ଉପରେ । ସବୁକଥାରେ ପଚାରନ୍ତି ତାଙ୍କୁ ଭଲମନ୍ଦ । ତାଙ୍କ ପୂଜା କର୍ମ ଉପରେ ଅଜୟ ବିଶ୍ୱାସ ରଖିଥାନ୍ତି । ତାଙ୍କ ଘରୁ ଘନଘନ ସାପଛୁଆ ବାହାରିବାପରେ ସେ ଶଙ୍କରା ବୁଢ଼ାର ଆଶ୍ରୟ ନେଇଥିଲେ । ସେ ସବୁ ପୂଜା କରିଥିଲେ । କେଇଟା ଅପରିଷ୍କାର ଖଞ୍ଜା ଭାଙ୍ଗିଦେଇଥିଲେ । ଛ'ଟା ସାପଛୁଆ ବାହାରିଥିଲେ । ଭୟାନକ ପରିବେଶ, ଘର ଭିତରେ ନାଗସାପ ସହ ବାସ । ଭୟରେ ତଟସ୍ଥ ଶାନ୍ତି । ମୁହଁ ଶୁଖିଯାଇଥାଏ ଅଜୟଙ୍କର । ହାଡ଼େହାଡ଼େ ଅନୁଭବ କରନ୍ତି ନିଜର ଅସହାୟତା । କଟକ ଯା'ନ୍ତି । ବାପା, ବୋଉଙ୍କୁ କୁହନ୍ତି ଏ ସବୁ । ବାଣୀବ୍ରତା କାନ୍ଦନ୍ତି । ଠାକୁରଙ୍କୁ ଡାକନ୍ତି । ମାତୃ ହୃଦୟର ପରିଚୟ ଥାଏ ସେ ଦରଦରେ । ମୁଣ୍ଡକୋଡ଼ିବା ପଛରେ । ହେଲେ କିଏ କରିଦେଇପାରିବ ଘର ଖଣ୍ଡିଏ ? ଚାରିଆଡ଼ ଅଥଳ ସମୁଦ୍ରରେ ଦିଗହରା ନାବିକ ପରି । ଗୁଣୁଗୁଣୁ ହୁଅନ୍ତି । ଭାଇଟାକୁ କିଏ ସାହାଯ୍ୟ କରୁନା ।

ଅର୍ପିତା ଭାବେ କିଏ କରିବ ? କିଏ ସେହି ସୁଯୋଗ୍ୟ ସନ୍ତାନ ? କାହାର ଅଛି ପ୍ରଚୁର ପରିମାପ ଟଙ୍କା ? ମଣିଷର କି ଅମୂଳକ ଜିଦି ? କି ଅବାନ୍ତର ମନ୍ତବ୍ୟ ? ସେ ଦେଖେ ମଣିଷର ସ୍ୱପ୍ନ, ଆକାଙ୍କ୍ଷା ଜିଦ୍‌ରେ ପରିଣତ ହୋଇଯାଏ ସେହି ମୁହୂର୍ତ୍ତରେ । ଅମୂଳକ ସେହି ଜିଦ୍‌ର ପ୍ରତିଛବି ସେ ଦେଖେ ଲମ୍ବା ହୋଇଉଠେ ବେଳାଗଡ଼ିବା ସହ । ହେଲେ ଅନ୍ଧାରରେ ମିଳେଇଯିବା ହିଁ ତା'ର ନିୟତି । ଅର୍ପିତା ମଧ୍ୟ ବୁଝାଇ ପାରେନା କାହାକୁ ।

ଶଙ୍କରାବୁଢ଼ା କିଛି ବୁଝନ୍ତି ତାଙ୍କ ମାନସିକ ଦ୍ୱନ୍ଦ, ଯନ୍ତ୍ରଣା ଅସହାୟତାର କଥା । ଶଙ୍କରାବୁଢ଼ା ଧ୍ୟାନ କରନ୍ତି । ମୁହଁଟି ସବୁବେଳେ ଦିଶୁଥାଏ ଉଜ୍ଜ୍ୱଳ । ତାଙ୍କୁ ପୁଅବୋହୂ ମଧ୍ୟ ପଚାରନ୍ତି ନାହିଁ । ସୁଦୂର କଳାହାଣ୍ଡିରେ ଥା'ନ୍ତି । କେବେ କେମିତି ଆସନ୍ତି ଘରକୁ । ବଡ଼ ଦୟନୀୟ ତାଙ୍କର ଜୀବନ । ତଥାପି ସେ ବଂଚିବା ପାଇଁ ଲଢ଼େଇ କରିଚାଲନ୍ତି । ଆନ୍ତରିକତା ଯାହାଠି ଥାଏ, ଡାକିଦେଲେ ପୂଜା କରିବାକୁ ଚାଲିଆସନ୍ତି । ଦିନେ ନେହୁରା ହୋଇ କହିଥିଲେ ''ଝିଅ ଆମକୁ ଲକ୍ଷେ କୋଡ଼ିଏ ହଜାର ଟଙ୍କା ଦେ, ଦେଖିବୁ ଘରଟା କେମିତି କରିଦେବୁ ।''

ଅର୍ପିତା ଭଲଭାବେ ଶଙ୍କରାବୁଢ଼ାଙ୍କୁ ଚିହ୍ନେନା । କହିଲା-କଟକରେ ଘର ତ କରିହେଉନି । ଅଧା ପଡ଼ିଛି । ଗାଁରେ ତା' ପରେ ।

ଓ ଝିଅ ! ତୁମ ଘରର ନାଆଁ କେତେ ଡାକ । ଜେଜେଙ୍କ ନାଆଁ ଟିକେ ରଖ । କଟକରେ ଯାହି ତାହି ଘର ଖଣ୍ଡେ ଅଛି । ଏଠି ଏମିତି ନୁଆଁଣିଆ । ଚାଳଘର, ସାପ ବାହାରୁଥିବ, କ'ଣ ଭଲ ଦିଶୁଛି ! ବାହାର ଲୋକ ଜଣେ । ସେ ତାଙ୍କୁ ସମ୍ମାନ ଦିଏ ସତ ହେଲେ ଏମିତି ଅଧିକାର ଥିଲାପରି କଥା କହିବେ, ତା' ସେ ପସନ୍ଦ କରେନା । କିନ୍ତୁ ଅଜୟଙ୍କର ସେ ଅନ୍ତରଙ୍ଗ । ତାଙ୍କ ଭଲ ମନ୍ଦ, ସୁଖ ଦୁଃଖର ସାଥୀ । ସେ ସବୁ ତାଙ୍କ ଆଗରେ ବଖାଣିଛନ୍ତି । ଅଜୟଙ୍କର ଅସହାୟତା ସେ ବୁଝନ୍ତି । ଅନୁଭବିଛନ୍ତି । ସେଥିପାଇଁ ସିନା ଏ ପ୍ରକାର ଜବରଦସ୍ତ ଯୁକ୍ତିଟିଏ ବୁଢ଼ା କରିପାରୁଛନ୍ତି । ଏଇକଥା ଭାବି ଅର୍ପିତା ତାଙ୍କୁ ସମ୍ମାନ ଦେଇଥିଲା । ମଣିଷଟିଏ ସବୁଆଡୁ ନିରାଶା ବୋଧକଲେ ମନର କଥା କହିବାକୁ ଜଣେ ସାଙ୍ଗ ଦରକାର । ସମବୟସର ଯୁବକମାନେ ତ ରୋଜଗାରରେ ମାତିଥିବେ, ଅଜୟ କେତେବେଳେ ସେମାନଙ୍କ ସାଙ୍ଗରେ ସାଙ୍ଗ ହେବେ । ବେରୋଜଗାରିଆ ସମବୟସ୍କ ବନ୍ଧୁ ଭିତରେ ଉଦ୍ଦେଶ୍ୟହୀନ ରାଜନୀତି କରୁଥିବା ଛୋଟିଆ କାଟିଆ କୁଜିନେତା ହିଁ ମିଳିବେ । ଯେଉଁମାନେ ଗୁଣ୍ଡା ହୁଣ୍ଡା ଯା ତା' ନାଆଁରେ ଗପିବାରେ ହିଁ ସମୟ ସରିବ, ସେଠି ମନର ଗଭୀରତାରେ ବସିଥିବା ନିରାଶାବୋଧକୁ କିଏ ଅନୁଭବି ଆଶ୍ୱାସନା ଦେବ, ସହାନୁଭୂତିଶୀଳ ହେବ । ମଣିଷ କୋଳାହୋଳ ଭିତରେ ହଜିଗଲେ ବି ସବୁବେଳେ ମନର ସ୍ତରରେ ଯେ ନିଃସଙ୍ଗଥାଏ ଆଉ ସେହି ନିଃସଙ୍ଗ ମନଟିଏ କାହାର ସ୍ନେହ, ସହାନୁଭୂତିଶୀଳତା, ନିରୁତା ଭଲ ପାଇବା ଚାହେଁ, ସେ ବୟସ୍କ ମଣିଷଟିଏ ହେଉପଛେ । ସେହି ସ୍ନେହ ଦିଏ ପରିତୃପ୍ତି । ବଂଚିବାର ଶକ୍ତି । ଆଉ ସ୍ତ୍ରୀ ଯେ ସବୁ ସମୟରେ ଦରଦ ବାଣ୍ଟି ପାରୁଥିବ, ତା'ର ବା କି ଭରସା ଅଛି !

ଘର ବା ହେଉଛି କେତେବେ ? ବରଂ ଆହୁରି ଖରାପ ହୋଇଆସେ ତା'ର ଅବୟବ । ଦୁଇଟା ମାତ୍ର ରୁମ୍ । ସେ ବି ଅବହେଳିତ ହୋଇ ପଡ଼ିଥାଏ । ବାଣୀବ୍ରତାଙ୍କ ପୁରୁଣା ଟ୍ରଙ୍କ ଜଙ୍କ୍ ଲାଗିଯାଇଥାଏ । ତାଲା ଭାଙ୍ଗିଯାଇଥାଏ । ତା ଭିତରର ଆସବାବ୍ ପତ୍ର ନଷ୍ଟ ହୋଇଯାଇଥାଏ । ବାଣୀବ୍ରତା ଗାଁକୁ ଯାଇ ଦେଖନ୍ତି ତାଙ୍କର ଅଯତ୍ନରକ୍ଷିତ ଜିନିଷସବୁ ସ୍ମୃତିଟିଏ ହୋଇ ରହିବାକୁ ଅସମର୍ଥ ହୋଇଛନ୍ତି । ତାଙ୍କ ବୋଉ ହାତ ତିଆରି କେତେ ଜିନିଷ, କାଇଁଚ ପେଡ଼ି ସବୁ ମୂଷାଙ୍କ ଶିକାର ହୋଇଥାଏ । ହୃଦୟ ତାଙ୍କର ହା... ହା... କାର କରିଉଠେ । କାହାକୁ କହିବେ ସେ ।

ବୋହୂକୁ କହିପାରିବେନି । ପ୍ରତ୍ୟୁତ୍ତର ହିଁ ସାର ହେବ । ‘‘ରଖିଲନି ତୁମ ଟ୍ରଙ୍କ୍, ଆଲିମିରା, ଖଟ, ପଲଙ୍କ ଆଉ କେଉଁଠି ନେଇ । ତୁମ ଯୋଗ୍ୟ ପୁଅ ତ ସକାଳୁ ଉଠି, ଚୁଡ଼ା ଗଣ୍ଡାଏ ପକାଇ ଦେଇ ଘରୁ ବାହାରିଗଲେ । ମୁଁ ଏକୁଟିଆ ଦୁଇଟା ପିଲାଙ୍କ ଛଟା କରିବି ନାଁ ଏ ସବୁ ପରିଷ୍କାର କରିବି ।’’ କଥା ନ ବଢ଼ିବା ପାଇଁ ବାଣୀବ୍ରତା ଚୁପ୍ ରୁହନ୍ତି ଆପଣା ମର୍ଯ୍ୟାଦା ରଖି । ପୁନଶ୍ଚ ଫେରନ୍ତି କଟକ । ସବୁ ନଷ୍ଟ ହୋଇଯାଇଥାଏ କ’ଣ ଗୋଟାଏ ପୁରୁଷର ଅପାରଗତା ହେତୁ ! କାହାରି ମନରେ ସରସତା ରହେ ନାହିଁ ? ସ୍ତ୍ରୀ ମନରେ ଶାନ୍ତି ନଥାଏ । ସେ ଗରଗର । ବାପକୁ ପେନ୍‌ସନ୍ ଟଙ୍କାରେ ଏତେବଡ଼ ପରିବାର ଟାଣିବାକୁ ଛାତି ଉପରେ ପଥର ରଖି ବସିଥାନ୍ତି । ଅର୍ପିତାକୁ କହିଲେ ସେ ଗରଗର । ପିଲା ତିନିଟାଙ୍କୁ ପାଠ ପଢ଼ାଉଛି । ପୁଣି କ’ଣ ? କଥା କହିଲେ ସେ ନିଆଁ ଝୁଲ୍ । କାହାକୁ କହିବେ ସେ ?

ନୂଆହୋଇ ଗାଁରେ ବ୍ୟାଙ୍କ୍ ଖୋଲିଲା । ବ୍ୟାଙ୍କର ମ୍ୟାନେଜର୍ ସାଙ୍ଗରେ ଅଜୟଙ୍କର ଭାରି ଦୋସ୍ତି । ଖୁବ୍ ବୁଲନ୍ତି ସାଙ୍ଗ ହୋଇ । ଘରକୁ ଡାକି ଖାଇବାକୁ ଦିଅନ୍ତି । ମ୍ୟାନେଜର ମଧ କେତେଥର କହିଛି- ଲୋନ୍ ନେଇ ଘରଟାଏ କରି ଭଡ଼ା ଦିଅ । ମୁଁ ସେହି ଘରେ ରହିବି । ହେଲେ ହୋଇପାରିଲାନି । ନିଜ ପାଇଁ କିଛି କରିବାର ସାହାସ ନାହିଁ । ଗାଁର ନେତାବୋଲି କେତେ ଲୋକ ଆସନ୍ତି ଆଇ:ଆର:ଡି:ପି ଲୋନ୍‌ଟାଏ କରାଇ ଦେବାକୁ । ଅଜୟଙ୍କର ଭଲ ସଂପର୍କ ଥାଏ ବ୍ଲକ୍‌ରେ । କେତେ ଲୋକଙ୍କୁ ଲୋନ୍ କରାଇ ଦିଅନ୍ତି । ହେଲେ ନିଜପାଇଁ କାହିଁକି ପଛାଇଗଲେ ବୁଝି ହୁଏନି । ଏମିତି କି ପିଇସୀ ପୁଅପାଇଁ ଆଇ:ଆର:ଡି:ପି ଲୋନ୍‌ଟାଏ କରାଇ ଦେଇଥିଲେ । ପାଞ୍ଚହଜାର ସେଥିରୁ ନିଜ ପାଖରେ ରଖିଥିଲେ । ଆସିବା ଡେରିହେଲା ତା’ର । ଖର୍ଚ୍ଚ ହୋଇଗଲା । ଆଉ ଫେରାଇ ପାରିନଥିଲେ । କି ତୁମୁଳକାଣ୍ଡ । ସେ ହାଟ ବଜାରରେ ବେଜିଦ୍ କରେ । ଛୁରି ଦେଖାଇଲା ଆଦାୟ କରିବାକୁ । ସମସ୍ତଙ୍କ ସାମ୍‌ନାରେ ଗାଳିଗୁଲଜ କଲା । ଏମିତିକି ନିଜ ମାମୁଁଙ୍କୁ ଦେଖିଲେ ନମସ୍କାର କଲାନି । କେତେ ମନ ଖରାପ କରନ୍ତି ଆଦିତ୍ୟ । ଚାପି ନ ପାରି କହି ପକାନ୍ତି । ଏମିତି ପଇସାଟିଏ ପାଇଁ ବେଜିଦ୍ ହୁଅନ୍ତି ଅଜୟ । ଏ କଥା ଶୁଣନ୍ତି ବାଣୀବ୍ରତା । ଆଖି ଛଳଛଳ କରନ୍ତି । ବଡ଼ ପୁଅର ଏ ପ୍ରକାର ଜୀବନରେ ହା... ହା... କାର କରିଉଠେ ତାଙ୍କର ମାତୃ ହୃଦୟ । ହେଲେ ଅସହାୟ । ନିରୁପାୟ । ମନର ବ୍ୟଥା ମନରେ ହିଁ ବାହୁନି ମରେ ।

❒❒❒

## (୮)

ଆଦିତ୍ୟ ଉଦ୍‌ଯୋଗୀ । କର୍ମଠ । ଅବସର ନେଲାପରେ ମଧ୍ୟ ମନରବଳ ତାଙ୍କର କମିନଥିଲା । ଗାଁ ମାଟିର ଆକର୍ଷଣ ତାଙ୍କ ପାଇଁ ଅନେକ । ସେ ଗାଁକୁ ଯାଇଥିଲେ । କିଛିଦିନ ମଧ୍ୟ ରହିଥିଲେ । ସାଙ୍ଗରେ ବାଣୀବ୍ରତା ଥିଲେ । ଯେଉଁ ଖାନଦାନୀ ଘରର ପୁଅ ହୋଇ କୁଟାଖିଅକୁ ଦିଖଣ୍ଡ କରିନଥିଲେ ଏବେ ଗୁରୁ ଦାୟିତ୍ୱ ଥିଲା ତାଙ୍କ ଉପରେ । ପିତା ବଂଚିଥିବା ଅବସ୍ଥାରେ ସେ ନିଜର ଜମିବାଡ଼ିର ଖୋଜଖବର ମଧ୍ୟ ରଖିନଥିଲେ । ଏବେ ନିଜ ଉପରେ ଦାୟିତ୍ୱ ପଡ଼ିଲା । କେଉଁ ଜମି କେଉଁଠି ତା' ସେ ବୁଝିଲେ । ଏମିତି କି ଚାକରବାକର ଘରେ ବଢ଼ିଥିବା ମଣିଷଟି ନିଜେ କାନ୍ଧରେ ବିହନ ବୁହାଇ ଜମିକୁ ଗଲେ । ଗୁହାଳରେ ପଶି ଗୋରୁ ମୁହାଁଇଲେ । ଚାକର ବାକର ରଖିବା ବଡ଼ ମୁସ୍କିଲ ହୋଇ ପଡ଼ିଥିଲା । କେବଳ ଘରଜଗି ପୁରୁଣା ଚାକରଟିଏ ପଡ଼ିଥାଏ । ଗାଁରେ ହଳିଆ, ମଜୁରିଆଙ୍କ ସାଙ୍ଗରେ ଏକ ହୋଇ ଜୀବନ ବିତାଇ ନେଇଥିଲେ କିଛିଦିନ । ହେଲେ ଏସବୁ ସବୁଦିନେ ସହ୍ୟ ହୁଏନାହିଁ ନ କରିଥିବା ମଣିଷଟିର । କଟକ ସହରରେ ଚାରିଟା ଛୁଆଙ୍କୁ ଭଡ଼ାଘରେ ଛାଡ଼ି ଦେଇ ଗାଁରେ ରହିବାରେ ଅର୍ପିତା ସବୁବେଳେ ଗରଗର ହେଲା । ଛୁଆଙ୍କ ଭବିଷ୍ୟତଠାରୁ ଗାଁରେ ଧାନ, ଚାଉଳ, କାଠିକୁଟାକୁ ଜଗି ରହିବାଟା କ'ଣ ଏତେ ବଡ଼ ? ଶୀଘ୍ର କଟକ ଆସି ପିଲାଙ୍କୁ ସମ୍ଭାଳନ୍ତୁ । ଖାଇବା, ପିଇବା ଠିକ୍ ନରହି ମାଲନ୍ୟୁଟ୍ରିସନ୍ ହୋଇଯାଉଛି ଛୋଟ ପୁଅଟିକୁ । କିଏ ଏଠି ସବୁ ସମ୍ଭାଳିବ ? ଅତ୍ୟଧିକ ଚାପ ଫଳରେ ଗାଁରୁ ପୁନଶ୍ଚ ଫେରିଆସିଥିଲେ ଆଦିତ୍ୟ ଆଉ ବାଣୀବ୍ରତା । ପେନ୍‌ସନ୍ ଟଙ୍କାରେ ଏତେବଡ଼ ସଂସାରର ଦାୟ ଦାୟିତ୍ୱ ଗଡ଼ିଚାଲିଲା ଆପଣା ସଂଘର୍ଷରେ ।

ମଝିଆଁ ପୁଅ ସୁଜୟ ଏମ:ଏସ:ସି ପଢୁଥାଏ । ବଡ଼ ଚଗଲା ଢଙ୍ଗର । କେତେବେଳେ ସ୍ଥିରତା ନଥାଏ ତା ପ୍ରକୃତିର । କଟକ ସହରର ଦସ୍ତୁର । ସାଙ୍ଗମେଳ ହୋଇ ଘୂରି ବୁଲିବା । ପାଠପଢ଼ାରେ ମନଧ୍ୟାନ ସେତେଟା ନଥାଏ । ଅଥଚ ପଇସା ହିଁ ପଇସା । ସବୁବେଳେ କିଛି ନାଁ କିଛି ପଇସା ଦରକାର । ପେନ୍‌ସନ୍ ପାଇଲାବେଳକୁ ସେ ଛକି ବସିଥାଏ । ନିହାତି ଶହେ କି ଦୁଇଶହ ଟଙ୍କା ତା'ର

ହାତଖର୍ଚ୍ଚ ଦରକାର । ଯେତେ ବୁଝାଇଲେ ବୁଝେନି । ଆରେ, ଘରେ ତ ଖାଉଛୁ, ରହୁଛୁ, ପୁଣି ପଇସା କ'ଣ ଦରକାର ? ତଥାପି ସେ ବୁଝେଇ ପାରେନି କିଛି । ପଇସା ହିଁ ଦରକାର । ଭଉଣୀକୁ ଚିଠି ଲେଖେ କଲିକତା । ମୋର ଚାରିଶହ ଟଙ୍କା ମାସକୁ ଦରକାର । କମ୍ପିଟେଟିଭ ପରୀକ୍ଷା ପାଇଁ ପକାଇବାକୁ ଫର୍ମ ଗୋଟାକୁ ଷାଠିଏ ଟଙ୍କା ଲେଖାଁ ଚାଲିଯିବ । ପେପର କିଣା, ବହି କିଣା, ଏସବୁ ପାଇଁ ଅତ୍ୟନ୍ତ ଖର୍ଚ୍ଚ ଚାରିଶହ ।

ଭଉଣୀ ହଁ...ହଁ। ମାରେ । ହେଲେ କେତେବେଳେ ପଠାଏ ତ କେତେବେଳେ ନାହିଁ । କ'ଣ ବା କରିହେବ ? ଦୂର ବିଦେଶରେ ରହିଲେ ଯିବା ଆସିବାରେ ତ ଅନେକ ଖର୍ଚ୍ଚ । ତା' ବ୍ୟତୀତ ଭଲମନ୍ଦ ଜିନିଷ କିଣାକିଣି ରହିଛି । ଭଉଣୀ ପରୀକ୍ଷାର ଗୁରୁତ୍ୱ ବୁଝେ । ଚାକିରି ପାଇଁ କେତେ ଯେ ଖର୍ଚ୍ଚ ତା' ମଧ ବୁଝେ । ସେ ମନା କରିପାରେନା । ହେଲେ ଠିକ୍ ସମୟରେ ପଠାଇ ହୁଏ ନାହିଁ ଏତେ ଗୁଡ଼ିଏ ଟଙ୍କା ।

ସୁଜୟର ଅସ୍ଥିର ମନ । ସାଙ୍ଗସାଥୀ, ଗପସପରେ ପରୀକ୍ଷାପାଇଁ କେତେଦୂର ସିରିଅସ ତା' ବୁଝିଥାଏ ଭଉଣୀ । ହେଲେ ଗୁରୁଦାୟିତ୍ୱ ଘରର ଖଣ୍ଡାହୋଇ ଝୁଲୁଥାଏ ପ୍ରତିଟି ମୂହୂର୍ତ୍ତରେ । ଚାକିରୀଟିଏ ନ ପାଇଲେ କ'ଣ କରିପାରିବ ଜଣେ ? କିଏ ତାକୁ ଦେବ ଭରଣ ପୋଷଣ ? ଏତେବଡ଼ ପରିବାରକୁ ପେନ୍‌ସନ୍ ଟଙ୍କାରେ ଟାଣିନେବା କେତେ ଯେ କଷ୍ଟ ତା' ମର୍ମେ ମର୍ମେ ବୁଝନ୍ତି ଆଦିତ୍ୟ ।

ସୁଜୟ ପ୍ରତିମାସରେ ତାଙ୍କଠୁ କିଛି ଝାଡ଼େ । ସେ ବିରକ୍ତ ହୁଅନ୍ତି । ବଡ଼ ପାଟିଟାଏ କରନ୍ତି । ତଥାପି ସେ ବୁଝେନା । କୁହେ ବଡ଼ ଭାଇର ଅଯୋଗ୍ୟ ପଣିଆ କଥା । କୁଆଡ଼େ ବା ସେ ଯିବେ ? ଗାଁରେ ଗଲେ ଚାରିପ୍ରାଣୀଙ୍କର ଝାମ୍ପ । ଛୁଆଟା ପାଇଁ କ୍ଷୀର ଟିକେ କିଣିବାକୁ ପଇସା ନଥାଏ । ଛୁଆର ଟ୍ୟୁସନ ଦରମା ଟଙ୍କା ଦେବାକୁ ନଥାଏ । ସବୁ ଆସି ପଡ଼େ ଆଦିତ୍ୟଙ୍କ ଉପରେ । ଯୁଆଡ଼େଗଲେ ଟଙ୍କାର ବିକଳ କଙ୍କାଳଟାଏ ତାଙ୍କୁ ଅନୁସରଣକରେ । କେଉଁଠି ଆଶ୍ରୟ ? ଶାନ୍ତିରେ ଟିକିଏ ନିଃଶ୍ୱାସ ମାରିପାରୁଥିବା ମୁହୂର୍ତ୍ତର । ସୁଖଦ ଅନାବିଳ ମୂହୂର୍ତ୍ତରେ ତଲ୍ଲୀନ ହୋଇପଡୁଥିବା କାଳର! ସବୁଠି ଅଭାବର ଚକ୍ରବ୍ୟୁହ । କେତେ ଅବା ଲଢ଼େଇ କରିବେ ସେ ରକ୍ତାକ୍ତ ହୋଇ ! କେଉଁ ମହାରଥୀ ମାନଙ୍କୁ ସେ ଅଟକାଇ ପାରିବେ ? ସାମାନ୍ୟ ପେନ୍‌ସନ୍ ଭୋଗୀ ସରକାରୀ ରିଟାର୍ଡ଼ କର୍ମଚାରୀ ହୋଇ । ପଡ଼ିଯିବା ହିଁ ସାର ହୁଏ ଯୁଦ୍ଧ କ୍ଷେତ୍ରରେ । ପୁନଶ୍ଚ ଉଠିବାକୁ ହୁଏ ।

ଏମିତି ହୋଇ ସରିଯାଏ ପୋଷ୍ଟ ଗ୍ରାଜୁଏସନ୍ ସୁଜୟର । ଆଖି ଆଗରେ ଭବିଷ୍ୟତ ଅନିଶ୍ଚିତ ହୋଇ ଠିଆ ହୋଇଥାଏ । ପରିଶ୍ରମ ଦରକାର ଲକ୍ଷଲକ୍ଷ ପିଲାଙ୍କ ଭିତରେ ଚାକିରି ପାଇଁ ଲଢ଼େଇକରି ଜୟଯୁକ୍ତ ହେବାକୁ, ସେ ପରିଶ୍ରମ ଯେ ସେ କରିପାରିବ ସେ ଆତ୍ମବିଶ୍ୱାସ ନାହିଁ । ତଥାପି ଏ ଅଭାବବୋଧର ଓଳନିଆ ପକ୍ଷୀଟି ଡେଣାମେଲାଇ ବସିଥାଏ ତାର ସମଗ୍ର ଅସ୍ତିତ୍ୱ ଡୁବାଇ । ସେ ହତଚକିତ ହୋଇଯାଏ । ଖୋଜି ବୁଲେ ଟ୍ୟୁସନ । ଟ୍ୟୁସନ ଗୋଟାଏ ଯୋଗାଡ଼ ହୋଇଗଲେ କିଛିଟା ଭରଣା ହୋଇଯିବ ।

ଶେଷକୁ ଜୟଯୁକ୍ତ ହୁଏ ସେ ଟ୍ୟୁସନ ପାଇବାରେ । ବିହାରୀ ଲୋକଟିଏ । କଟକରେ ତାଙ୍କର ଆଲମିରା ତିଆରି କାରଖାନା । ବେଶ୍ ପଇସାବାଲା । ଦୁଇଟା ଛୁଆ ସ୍କୁଲକୁ ଯା'ନ୍ତି । ଜଣଙ୍କର ଷଷ୍ଠ ଶ୍ରେଣୀ ଅନ୍ୟଟିର ଚତୁର୍ଥ । ଅଙ୍କ ପଢ଼ାଇବା ଦରକାର । ସୁଜୟର ଅଙ୍କ ଜ୍ଞାନ ଭଲ । ସେ ଏମ:ଏସ୍:ସି ପାଶ କରିଥାନ୍ତି ମାଥ୍‌ମାଟିକ୍‌ସ ନେଇ । ବିହାରୀ ମଣିଷଟିର ମାଥମାଟିକ୍‌ସର ମାଷ୍ଟରଟିଏ ପାଇଛନ୍ତି ।

ସୁଜୟ ଖୁବ୍ ଖୁସୀ ବିହାରୀର ଦୁଇଟି ଛୁଆକୁ ପାଇ । ଚାରିଶହ ଟଙ୍କା ରୋଜଗାର କ'ଣ କମ୍ କଥା ? ହେଲେ ଛୁଆ ଦୁଇଟା ବଡ଼ ଗଧିଆ । କିଛି ମନେରଖି ପାରନ୍ତି ନାହିଁ । ଯେତେ ବୁଝାଇଲେ ବି ଧରିପାରନ୍ତି ନାହିଁ ।

ଟ୍ୟୁସନକୁ ଯାଉଯାଉ ସେମାନେ ଚା', ଜଳଖିଆ ସବୁଦିନେ ଦିଅନ୍ତି । ବ୍ୟବହାର ଖୁବ୍ ଭଲ ବାପା, ମା'ଙ୍କର । ପଇସାପତ୍ର ମଧ୍ୟ ଠିକ୍ ସମୟରେ ଦିଅନ୍ତି । ଅଥଚ ପିଲା ଦୁଇଟାଙ୍କର ଏ ପ୍ରକାର ଷ୍ଟାଣ୍ଡାର୍ଡ଼କୁ ନେଇ ମନେ ମନେ ଦୁଃଖ କରେ ସୁଜୟ । ଖୁବ୍ ଖଟିବାକୁ ପଡ଼େ ତାଙ୍କ ପଛରେ । ଯେମିତି ହେଲେ ପାଶ୍‌ଟା ହୋଇଗଲେ ଯାଏ ।

ସୁଜୟ ସବୁକଥାରେ ଯୋଗାଡ଼ିଆ । ପିଲାଦିନୁ ଆତ୍ମନିର୍ଭରଶୀଳ । ସାହାସୀ । ଘରର ଏ ଅବସ୍ଥା ତାକୁ ବିଚଳିତ କରେ । ବାପାଙ୍କର ଦିନକୁ ଦିନ ଆର୍ଥିକ ଚାପ କଥା ସେ ଭାବେ । ହେଲେ ଉପାୟହୀନ । ଅଜୟ ପରି ସେ ପାଟି ଚୁପ୍ କରି ବସିପାରେ ନାହିଁ । ଅଜୟ ପଳାତକ । ତେଣୁ ସେ ମୂକ ସବୁବେଳେ । ଏମିତି କି ଆଦିତ୍ୟ କିଛି ପଚାରିଲେ ସେ ଜାଗା ଛାଡ଼ି ଚାଲିଯା'ନ୍ତି । ଆଦୌ ପାଟି ଫିଟାନ୍ତି ନାହିଁ । ସୁଜୟ ଛାଡ଼େନା । ସେ ସବୁବେଳେ ତର୍କ ଉପରେ ଅବତୀର୍ଣ୍ଣ ହୁଏ ।

ସେ ବିହାରୀ ଲୋକଟିକୁ ପ୍ରସ୍ତାବ ଦେଇଥିଲା ଆଦିତ୍ୟଙ୍କ ପାଇଁ ପ୍ରାଇଭେଟ୍ ଚାକିରିଟିଏ ଯୋଗାଡ଼ କରିବାକୁ । ଯେତେହେଲେ ବି ଟ୍ୟୁସନ ମାଷ୍ଟର । ଛୁଆଙ୍କ

ଭବିଷ୍ୟତ ତାଙ୍କ ହାତରେ । ତାଙ୍କ କଥା କେମିତି ନ ବୁଝିବେ ? ତେଣୁ ବିହାରୀ ଲୋକ ମିଃ ସିଂହ ଚିନ୍ତା କରିଥିଲେ । ତାଙ୍କର ବ୍ୟକ୍ତିତ୍ୱରେ ଗାମ୍ଭିର୍ଯ୍ୟ ଫୁଟାଇ କହିଥିଲେ-ହଉ ଦେଖିବା । ମୋର ଜଣେ ମାରୱାଡ଼ି ସାଙ୍ଗ ଅଛନ୍ତି । ଢର୍ଦ୍ଧା କମିଶନ୍ ଏଜେଣ୍ଟ । ତାଙ୍କର ଲୋକ ଦରକାର ।

ସୁଜୟର ଆଖିରେ ଆନନ୍ଦ ଲହରୀ ଭାଙ୍ଗେ । କହିପକାଏ ବାପା ଆକାଉଣ୍ଟାସିରେ ଚିଫ୍ ମିନିଷ୍ଟରଙ୍କ ଠାରୁ କପ୍ ପାଇଥିଲେ । ବଡ଼ ପରିଷ୍କାର ଜ୍ଞାନ ତାଙ୍କର । ସୁନ୍ଦର ଅକ୍ଷର । ଖୁବ୍ ସିନିସିଅର । ଆପଣ ଦେଖିବେ କେମିତି କାମ କରିବେ ସେ ।

ବିହାରୀ ମିଃ ସିଂହ ସୁଜୟର ଉଚ୍ଛ୍ୱସିତ ବ୍ୟାକୁଳତାରୁ କ'ଣ ବୁଝିଥିବେ କେଜାଣି, ପୁନଶ୍ଚ କହିଥିଲେ-ହଁ... ହୋଇଯିବ । ମିଃ ସିଂହଙ୍କର ନିତି ମାଲପିଆ ବଂଧୁ ମି: ବାଗ୍ରୀ । ତାଙ୍କ କଥାକୁ ସେ ଟାଳିବେ କେମିତି ? ମିଃ ବାଗ୍ରୀ ହଁ ଭରିଲେ କଥା ହେଲା-ହଜାରେ ଟଙ୍କା ଦରମା ଦେବେ ।

ଯାହା ହେଉ ସୁଜୟ ଏବେ ଖୁସୀ । ଘରକୁ ଅନ୍ତତଃ ଆଉ ହଜାରେ ଟଙ୍କା ଆସିବ ତ ! ଏ ଟଙ୍କାର ଘନାଘୋଟ ଭିତରେ କେତେ ଯେ ଆଶାର କ୍ଷୀଣ ଆଲୋକଟିଏ ଏଇ କେତେଟା ଟଙ୍କା, ତା' କିଏ ବୁଝିବ ? ସେ ଖୁସୀରେ ନାଚିଯାଏ । ବାପାଙ୍କୁ ଆସି କୁହେ ।

ଆଦିତ୍ୟବାବୁ ନିରୁତ୍ତର ରୁହନ୍ତି । ବୟସ ହେଲାଣି । ଏ ବୟସରେ ପ୍ରାଇଭେଟ୍ କାମ ମାନେ ମୁଣ୍ଡ ବିକିବା ପରି । କିଏ କେଉଁ ବ୍ୟବହାର କରିବ, ତା' କ'ଣ ସେ ସହ୍ୟ କରିପାରିବେ ? ସେ ଘଡ଼ିଏ ଅମମତ ହୋଇଗଲେ । ବସି ପଡ଼ିଲେ ।

ତାଙ୍କ ନିରୁତ୍ତର ରହିବା ଦେଖି ସୁଜୟ ବୁଝାଇବାକୁ ଲାଗିଲା । ଖୁବ୍ ଭଲ ମଣିଷ ସେମାନେ । ଦୋକାନ ବି ନୁହେଁ । ସେ ସେହି ଘରେ ରୁହନ୍ତି । ତା' ଭିତରୁ ଗୋଟାଏ ରୁମ୍‌ରେ ଆପଣ ବସିବେ । ଇଚ୍ଛା ହେଲେ ଶୋଇବେ । ଗଦି ପଡ଼ିଛି । ଆରାମ ଚାକିରି ।

ସୁଜୟ ଚିଠିଟିଏ କଲିକତାରେ ଥିବା ଭଉଣୀ ପାଖକୁ । ଖୁବ୍ ଖୁସୀରେ ଲେଖିଥାଏ ବାପାଙ୍କର ଏଇ ନୂଆ ଚାକିରି କଥା । ଚିଠିଟା ହାତରେ ଧରି ଅର୍ପିତା ଥ' ହୋଇଯାଏ । ଇଏ କ'ଣ ? ସତୁରୀବର୍ଷ ବୟସରେ ବାପା ଯିବେ ମାରୱାଡ଼ି ଘରେ ଖଟିବାକୁ ? ତା' ମୁହଁରେ ଚାଲିଯାଏ କଳାମେଘ ଖଣ୍ଡେ । ଚେହେରା ତା'ର ମଳିନ

ହୋଇଯାଏ । ମୁହଁରୁ ହସ ଲିଭିଯାଏ । ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀର କି ଆତ୍ମସମ୍ମାନ ରହିବ ଏ ପ୍ରାଇଭେଟ୍ ଚାକିରିରେ ? ସେ ବିଚଳିତ ହୋଇ ମୁହଁ ମାଡ଼ି ଶୋଇପଡ଼େ ସେହି ନିର୍ଜନ ଘରେ । ପାଖରେ ଥାଏ ସୌମ୍ୟ । କଥାଟା ଶୁଣେ । ହସି ଦିଏ । କୁହେ ଆମର ଡାଇରେକ୍ଟର ବୁଢ଼ାକୁ ସତୁରୀ ବର୍ଷ ସେ କେମିତି ଆମ ଇନ୍‌ଷ୍ଟିଚ୍ୟୁଟରେ ଖଟୁଛନ୍ତି ? ବରଂ ଘରେ ବସିବା ଅପେକ୍ଷା ମନଟା ଏନ୍‌ଗେଜ୍ ହେଲେ ଅନ୍ୟଆଡ଼େ ଭଲ ।

ସେ ସୌମ୍ୟର ହସକୁ ଶୁଣିପାରୁନଥିଲା । ତା’ ଛାତିତଳୁ ଶୂନ୍ୟତାମାନ ଉଛୁଳି ଆସୁଥିଲେ । ବାପାଙ୍କର ସରଳ, ନିରୀହ ଚେହେରା ତା’ ଆଖିରେ ଭାସି ଯାଉଥିଲା । କେତେ ଯେ ସଂଘର୍ଷ ତାଙ୍କ ଜୀବନରେ ଚାଲିଗଲାଣି ତଥାପି ସେ ଚେହେରା ଫିକା ପଡ଼ିନାହିଁ । କେତେ ତେଜଦୀପ୍ତ ଚେହେରା । କେଡ଼େ ସୁନ୍ଦର ଦିବ୍ୟପୁରୁଷର ଛାପ । କେତେବେଳେ ହେଲେ ଅନୁତାପ ନାହିଁ, ଅନୁଶୋଚନା ନାହିଁ, ସଂଘର୍ଷ କରିଯିବା ହିଁ ଯେମିତି ତାଙ୍କର ଧର୍ମ । କେଉଁ ସୁଖ, ଶାନ୍ତି ଅବା ପିଲାମାନେ ତାଙ୍କୁ ଦେଇଛନ୍ତି ? ଶେଷକୁ ଥିଲା ଏ ବୟସରେ ମାରଓ୍ୱାଡ଼ି ଘରେ ଖଟିବେ ? ତା’ର ଉଦାସୀ ଚେହେରା, ଭାରି ହୋଇ ପଡୁଥିବା ମୁହଁ ଦେଖି ସୌମ୍ୟ ହସିଥିଲା । କୌଣସି ଘଟଣାରେ ଇମୋସନ ତା’ର ଜାଗ୍ରତ ନୁହେଁ । ସବୁକଥାକୁ ଅତି ଥଣ୍ଡା ମିଜାଜରେ ନିଏ । କିଏ ତା’ ଇନ୍‌ଷ୍ଟିଚ୍ୟୁଟରେ ରହିଲାବୋଲି ତା’ ବାପା ଏ ବୟସରେ ମାରଓ୍ୱାଡ଼ିଘରେ କାମ କରିବେ ? ନାଁ... ନାଁ... ସେ ଏସବୁକୁ ବରଦାସ୍ତ କରିପାରେନା । ତାଙ୍କ ଉପରେ ଘରର ତ ଅନେକ କାମ । କେଉଁ ସମୟ କାଟି ପାରୁ ନାହାନ୍ତି ଯେ ଯିବେ ବାଗ୍ରୀ ବୁଢ଼ାର କାମ କରିବାକୁ । ସବୁବେଳେ ସେ କର୍ମଠ । ଘରକାମଠାରୁ ଗାଁରେ ଚାଷବାସ କାମ ସବୁ ଦେଖୁଦେଖୁ ତାଙ୍କୁ ସମୟ ମିଳେନା । ଅଥଚ ସମୟ କାଟିବାକୁ ଯିବେ ସେ ଏ ବୟସରେ ଚାକିରି କରି ?

ସେ ଜାଣେ ବାପା ଏତେକଥା ଚିନ୍ତା କରି ନଥିବେ । ଅବସରପରେ ନିର୍ବିବାଦରେ, ନିର୍ବିଘ୍ନରେ ସେ ଘରକାମ କରିଯା’ନ୍ତି ବିକାରହୀନ ଭାବରେ । କୌଣସି ପ୍ରତିରୋଧ କରନ୍ତି ନାହିଁ ମଧ୍ୟ । ତାଙ୍କ ମନରେ କାମପାଇଁ ଛୋଟବଡ଼ ବାଛ ବିଚାର ନଥାଏ । ସେ କୌଣସି କଥାକୁ ଏତେ ଗଭୀର ଭାବରେ ଚିନ୍ତା କରିନଥାନ୍ତି । ସେଥିପାଇଁ ସୁଜୟର କଥାକୁ ଟାଳି ପାରିନଥିବେ । ତା’ପରେ ପଇସାର ଗୋଟାଏ ଶକ୍ତ ଅଭାବବୋଧ ତାଙ୍କୁ ନିଷ୍ପତ୍ତି ନେବାରେ ବାଟ ଓଗାଳି ଠିଆ ହୋଇଛି ।

ସେଦିନ ଅର୍ପିତା ଅନେକ କାନ୍ଦିଥିଲା । ସେ ଲୁହ କେବଳ ଦେଖିଥିଲା ନିର୍ଜନ ଘର । ଆଉ ସୌମ୍ୟ ହସିହସି ବାହାରି ଯାଇଥିଲା ନିଜ କାମରେ ।

କାହିଁକି ସେଦିନ ସେ ଏଇ ଅସହାୟ ପଣିଆକୁ ପ୍ରତ୍ୟକ୍ଷ କରିଥିଲା କଲିକତାରେ ବସି । ଭୀଷଣ ଗୋଟାଏ ଶୂନ୍ୟତାବୋଧରେ ଭାରିହୋଇ ପଡୁଥିଲା ମନ । ସୁଜୟର ମନରେ ସେ କୌଣସି ଦିନ ଅନୁଶୋଚନା ଦେଖିନି ବାପାଙ୍କୁ ମାରଓ୍ୱାଡ଼ି ଘରେ ନିଯୁକ୍ତି ଜୁଟେଇ । ବରଂ ହର୍ଷ, ଉଲ୍ଲାସ ହଜାର ଟଙ୍କା ପାଇବାର ଗୋଟାଏ ବିରାଟ ଆଚିଭ୍‌ମେଣ୍ଟରେ ତା'ର ଆଖିକୋଣରୁ ହସର ଧାର ଝଲସି ଉଠିଛି । ବିହାରୀ ଭଦ୍ରଲୋକଙ୍କର ଅପାର କରୁଣାକୁ ସେ ଗ୍ରହଣ କରିଛି ପ୍ରସାଦ ପରି ।

କିନ୍ତୁ ଅର୍ପିତାର କଥା ଭାବନାକୁ କିଏ ବା ଗୁରୁତ୍ୱ ଦିଏ ! ତା'ର ଭାବପ୍ରବଣତା ଖିଆଲି ମନର ଏସବୁ ପରିଚାୟକ ବୋଲି ଘରେ ସମସ୍ତେ ଧରିନେଇଥାନ୍ତି । ଜୀବନଠାରୁ ସଂଯୋଗ ହୀନ ଭାବରେ ଘୂରୁଥିବା ଲୋକଙ୍କର ବକ୍ତବ୍ୟକୁ ଖୁବ୍ ସଂସାରୀ ଦେଖା ଯାଉଥିବା ଲୋକମାନେ ସବୁବେଳେ ଫୁତ୍‌କାରରେ ଉଡ଼ାଇ ଦେଇଥାନ୍ତି । ସେଥିପାଇଁ ସିନା କେହି ମାନନ୍ତି ନାହିଁ ତା'ର କଥାକୁ ।

ଅର୍ପିତା ବି ଭୁଲିଯାଏ ଏ ସବୁ । ତା' ମଥା ଉପରେ ନିତିପ୍ରତି କଲିକତାର ଜନଗହଳି ରାସ୍ତାକୁ ପାରିହୋଇ ବସ୍ ଟ୍ରାମରେ ଉଠି, ସଂଘର୍ଷ କରି ଅଫିସ୍‌ରେ ପହଞ୍ଚିବା ପୁନଶ୍ଚ ଘରକୁ ଆସିବାର ସମୟ ବିତେ । ନିଜର ଜୀବନ ଚିନ୍ତାରେ ସେ ମୁହ୍ୟମାନ । ସେ ଏସବୁ ବସି କେତେଦିନ ଭାବିପାରିବ । ଶୁଣିଲା-ମନଦୁଃଖ କଲା-ମନାକଲା । ତା'ର ବକ୍ତବ୍ୟ ଜଣେଇଦେଲା । ବାସ୍ । କେହି ମାନୁ ବା ନ ମାନୁ । ପୁନଶ୍ଚ ସେ ସାମିଲ ହୋଇଯାଏ ପ୍ରାତ୍ୟାହିକ ଜୀବନ ଯାତ୍ରାରେ ।

ସୁଜୟ ବି ଯାହାହେଉ ଚାକିରି ଖଣ୍ଡିଏ ପାଇ ଯାଇଛି । ଟ୍ୟୁସନର ହାତପାତିବା ପରି ପଇସାର ପରିବେଶ ଦୂରେଇ ଯାଇଛି । ନିଜକୁ ଛୋଟକରି ଭାବିବା ମଧ୍ୟ ଅବସାନ ହୋଇଛି । ହେଲେ କେବେ କହିନି-ବାପା, ଆଉ କାହିଁକି ଚାକିରି କରିବ ସେ ମାରଓ୍ୱାଡ଼ି ପାଖରେ । କେବେହେଲେ ସେ ମଣିଷର ମର୍ଯ୍ୟାଦାବୋଧର ମୂଲ୍ୟରେ ଘଟଣାଟିକୁ ପରଖି ନାହିଁ । ବରଂ ପଇସା ସର୍ବସ୍ୱ ମନନେଇ ଚୁପ୍ ରହିଛି । ସମୟ ଆଗେଇଛି ତା'ର ଆପଣା ବାଟରେ ।

ooo

## ( ୯ )

ଆଦିତ୍ୟ ସବୁଦିନପରି କର୍ମ ତତ୍ପର । ଠିକ୍ ନ'ଟା ବେଳକୁ ପ୍ରସ୍ତୁତି ଆରମ୍ଭ ହୋଇଯିବ ବାଗ୍ରୀବୁଢ଼ାର ଅଫିସ୍ ଯିବାକୁ । ଖୁବ୍ ତରବର ହୋଇ ବାହାରୁଥିବେ ଅବା ଯୁଆନ ବୟସର ମଣିଷଟାଏ । ଅଫିସ ଡେରିହୋଇ ଯାଉଛି । ଠିକ୍ ସମୟରେ ନଗଲେ ମଷ୍ଟର ରୋଲ୍‌ରେ ଛକି ପଡ଼ିଯିବ । ଯାହାହେଲେ ବି ତ ଚାକିରି । ଗୋଲାମି ଗିରି । ଅନ୍ୟର ଅଧୀନ । ତାକୁ ମାନିବାକୁ ପଡ଼ିବ । ସମୟାନୁସାରେ ନ ପହଁଚିଲେ ନିଜକୁ ଦୋଷୀ ଲାଗିବ ।

ସେଠି ପହଞ୍ଚି ତତ୍‌କ୍ଷଣାତ୍ କାମ ଶେଷକରି ଦିଅନ୍ତି । ଆକାଉଣ୍ଟସ୍‌ରେ ସେ ଧୂରନ୍ଧର । ପରିଷ୍କାର ଭାବେ ମେଣ୍ଟେନ କରିଥାଆନ୍ତି ସବୁ ।

ବାଗ୍ରୀ ଦାଦାଜୀ କହି ଖୁବ୍ ସମ୍ମାନ୍ କରେ । ବଡ଼ ଏକୁଟିଆ ଲୋକଟିଏ । ସବୁବେଳେ ଗୋଟିଏ କୋଠରୀରେ ବସିରହିଥାଏ । ଫୋନ୍‌ରେ କାରବାର ବୁଝେ । ଯଦିଓ ପୁଅବୋହୂ ଥାନ୍ତି କଟକ ଭିତରେ, ସେମାନେ କେବେ ଆସନ୍ତି ନାହିଁ । ଠିକା ଚାକରାଣୀଟାଏ ଆସି ରୋଷେଇବାସ କରି, ଘର ଝାଡ଼ି, ବାସନମାଜି ଚାଲିଯାଏ । ହେଲେ ଖାଦ୍ୟରେ ମୁହଁ ଦେଇପାରେନି ବାଗ୍ରୀ । ତା'ର ହାଇ ହାଇବେଟିସ ଅଛି । ଯେତେ ତେଲ ମସଲା କମ କରି ଖାଇବା କଥା । ହେଲେ ତାକୁ ଯେତେ କହିଲେ ବି ମନେ ରଖେନି । ତରତର ହୋଇ ଆସେ । ଘରଝାଡୁ କରି, ପୋଛାପୋଛି କରେ । ବାସନ ମାଜି ତରତର ହୋଇ ରୋଷେଇକରେ । ଝଡ଼ପରି ଆସେ ଆଉ ଯାଏ । କନ୍ଦିରେ ସେମିତି ମଇଳା ଲୁଚିଥାଏ । କେତେବେଳେ ତେଲ ମସଲାରେ ଭସାଇଦିଏ ତ କେତେବେଳେ ମନେ ପଡ଼ିଲେ କମ୍ ଦେଇଥାଏ । ତା'ର ନିଷ୍ଠା ନଥାଏ କାମରେ । ଯେତେ ବାରଣ କଲେ ବି ମନେରଖି ପାରେନା । ତା'ର ବା କି ଦାୟ । ଏମିତି କେତେ ଘର ସେ ଖଟୁଛି । କାହାର କେଉଁ ଫର୍ମାସୀକୁ ସେ ମନେ ରଖିବ ? ବୁଢ଼ାର ଡାଏବେଟିସ କମିଲା କି ବଢ଼ିଲା ତା'ର ସେଥିରେ ଯାଏ ଆସେ କେତେ ? ମାସକୁ ଦିଏ ପାଞ୍ଚ ଶହ ଟଙ୍କା । ବାଗ୍ରୀର ଅଶାନ୍ତି ବଢ଼େ । ଗାଳୁରୁ ଗାଳୁରୁ ତା' ସଙ୍ଗେ ଘଡ଼ିଏ ହୁଏ । ସେ ବି ମୁହଁରେ ଉତ୍ତର ଦେବାକୁ ପଛାଏ ନାହିଁ । ସେମାନେ ଜାଣନ୍ତି ଲୋକଟିଏ କାମକରିବାକୁ ମିଳିବା କଷ୍ଟ । ବୁଢ଼ା ପାଇବ ନାହିଁ । ତେଣୁ ଉତ୍ତରଦେବା ତା' ପାଇଁ ସହଜ ହୋଇପଡ଼େ ।

ଦୂରରୁ ଦେଖନ୍ତି ଆଦିତ୍ୟ। ଆହା... ରୋଗୀ ମଣିଷଟିଏ। କିଏ ଟିକିଏ ଭଲା ଦେଖାଶୁଣା କରନ୍ତା। ନାଁ...କିଏ ଦେଖିବ ? ମନେ ମନେ ଆଦିତ୍ୟ କଷ୍ଟ ପାଇଥିଲେ। ମନେ କଲେ ବାଣୀବ୍ରତାଙ୍କୁ କହିବେ କି ଆଉ ରୋଷେଇ କରିଦେବେ। ସେ ବରଂ ବୁହାଇ ନେଇଯିବେ। ମନକଥା ଥରେ କହିଥିଲେ। ହେଲେ ବାଣୀବ୍ରତାଙ୍କୁ ବୟସ କେତେ ସେ ଭୁଲିଯାଇଥିଲେ। ଛ'ଷଠି ବର୍ଷ ବୟସରେ ଘର ଗୋଟାଯାକର କାମ କରି ସେ ବେଳେବେଳେ ଦମ୍ ମାରିବାକୁ ଡାଇନିଂ ଟେବୁଲ୍ ଧରି ଠିଆ ହୋଇଯା'ନ୍ତି। ଆଦିତ୍ୟ କିନ୍ତୁ ବାଗ୍ରୀର ଦୁନିଆରେ ଭୁଲିଯାଇ ବଡ଼ ସହାନୁଭୂତିଶୀଳ ହୋଇପଡ଼ିଥିଲେ। ବାଣୀବ୍ରତାଙ୍କୁ ପ୍ରସ୍ତାବ ଦେଇଥିଲେ "ଟିକେ ରୋଷେଇ କରି ଦିଅନ୍ତ ନାହିଁ ବାଗ୍ରୀ ପାଇଁ। ବିଚାରା ବଡ଼ ହଇରାଣ ହେଉଛି।" ବାଣୀବ୍ରତା ଖଙ୍କାରି ଉଠିଥିଲେ। "ମୋ ଅବସ୍ଥା ତୁମକୁ ଦିଶୁନି ପରା। ମୁଁ କ'ଣ ଯୁଆନ ଟୋକି। ବଳଯାଇ ବୟସ ମାଡ଼ି ଆସୁଛି। ତୁମ ମାଲିକକୁ ରୋଷେଇ କରି ଦେବି।"

ବୋଧହୁଏ ବାଣୀବ୍ରତାଙ୍କ ବ୍ୟକ୍ତିତ୍ୱରେ ଏଇ କଥାଟା ଆଘାତ କରିଥିଲା। ନାରୀର ବ୍ୟକ୍ତିତ୍ୱ ଗୋଟାଏ ଭିନ୍ନ ରକମର। ବାଣୀବ୍ରତା ଯେଉଁ ପରିବାରରୁ ଆସିଛନ୍ତି, ସେ ପରିବାରର ଆଭିଜାତ୍ୟ କିଛି କମ୍ ନୁହେଁ। ଗୋଟାଏ ମାତ୍ର ଝିଅ ବାପା, ମା'ଙ୍କର। ତାଙ୍କ ଜେଜେଙ୍କର ଥିଲା ଶହେ ଏକର ଜମି। ଘରର ନାଆଁ ଡାକ। ଗୋଟାଏ ପ୍ରତିପତ୍ତିଶାଳୀ ବଂଶରୁ ସେ ଆସିଛନ୍ତି। ଯେଉଁଠି ଚାକର, ପୂଜାରୀ କାମ କରନ୍ତି ଘରେ। ସେ କୁଆଁରୀ ବୟସରେ କେବେ ହେଲେ ଘରକାମ କରିନଥିଲେ। ବଡ଼ ଅୟସରେ ବଢ଼ିଥିଲେ। କ'ଣ ବା ତାଙ୍କର ଅଭାବ ଥିଲା। ଜମିଦାରୀ ବିଷୟରେ ବୁଝିବାକୁ ତାଙ୍କ ବାପା କଲିକତା ଗଲାବେଳେ କେତେ ବହିପତ୍ର ଆଣିଦେଉଥିଲେ। ସେସବୁ ସେ ପଢୁଥିଲେ। ବରଂ ବାହାହୋଇ ଆସିବା ପରଠୁ ଆଦିତ୍ୟଙ୍କ ଘରେ ଖଟିଖଟି ସେ ଏମିତି କଂକାଳ ସାର ହୋଇଛନ୍ତି। ତାଙ୍କ ଦେହରେ ଅଛି ବା କ'ଣ ? ଯୌଥ ପରିବାରରେ ଗୋଟିଏ ସ୍ତ୍ରୀ ଲୋକକୁ କେତେ ବା ପୃଷ୍ଟିକର ଖାଦ୍ୟ ମିଳେ ଖାଇବାକୁ। ପିଲାମାନେ ଖାଇ, ମରଦମାନେ ଖାଇସାରିବାପରେ, ସେମାନେ ବସନ୍ତି। ଦିନ ଚାରିଟା ହୋଇଯାଏ ଖାଇବାକୁ। ସେତେବେଳେକୁ କ'ଣ ଥାଏ ? ଭାତ, ଟିକିଏ ଡାଲି, ମାଛ ମାଂସ ହୋଇଥିଲେ ଆଦୌ ନଥାଏ। କେଉଁଠୁ ଟିକିଏ ଖଟା ଲଗାଇ ଖାଇବାକୁ ପଡ଼େ। ଖଟିଖଟି ସକାଳ ଚାରିରୁ ରାତି ବାରଟାଯାଏ ଜୀବନର ପର୍ଯ୍ୟାପ୍ତ ସମୟ ଚାଲିଗଲା। ଏବେ ବି ନିଜ ଘରପାଇଁ କେତେ ଯେ ଖଟଣି ! ତା'ର କଷ୍ଟ ମର୍ମେମର୍ମେ ସେ ବୁଝନ୍ତି। କଟକ ସହରରେ ବଂଧୁବାଂଧବମାନେ ଆସି ପହଞ୍ଚନ୍ତି ବିଭିନ୍ନ କାମରେ। ତାଙ୍କ ପାଇଁ ଅଧିକା ଚାଉଳ ସବୁବେଳେ ପଡ଼େ। ଗୋଟାଏ ଜୀବନରେ କେତେ ଯେ ରାସ୍ତା ଆସିଲେଣି, ହେଲେ କାହିଁ ତାଙ୍କୁ ବିଶ୍ରାମ, କାହିଁ ଟିକିଏ ହାଲ୍‌କା ହୋଇପଡ଼ିବାର ମୂହୂର୍ତ୍ତ ? ପୁଣି ଆଦିତ୍ୟଙ୍କର ଏ ଫର୍ମାସୀ ? ଶୁଣି କୋପାନଳ ହୋଇ ଯାଇଥିଲେ

ବାଣୀବ୍ରତା । ସେ କାଳର ମଣିଷ ସିଏ । ପାରମ୍ପରିକ ଖୁବ୍ । କୌଣସି ପରପୁରୁଷକୁ ଏମିତି ରୋଷେଇକରି ପଠାଇବାଟା ତାଙ୍କ ବ୍ୟକ୍ତିତ୍ୱକୁ ଅସମ୍ମାନିତ ଲାଗିଥିଲା ।

ଆଦିତ୍ୟ ଅଗତ୍ୟା ଚୁପ୍ ହୋଇଯାଇଥିଲେ । ନ ଭାବିଚିନ୍ତି ସହାନୁଭୂତିଶୀଳ ମନଟିଏ ନେଇ ସେ ବାଗ୍ରୀ ପାଇଁ ଦୟାର୍ଦ୍ର ହୋଇପଡ଼ିଥିଲେ । ସେଥିପାଇଁ ସିନା ଶ୍ରୀମତୀଙ୍କ ମୁହଁ ଘେଁଘରା ଦେଖିବାକୁ ମିଳିଲା । ସେ ଦିନୁ ସେ ଏ ବିଷୟରେ କେବେ କହିନାହାନ୍ତି ।

ବାଗ୍ରୀବୁଢ଼ାର ପ୍ରବଳ ଅସନ୍ତୋଷ, ଅର୍ନ୍ତଦାହ ବଢୁଥିଲା । କେହି ଠିକ୍ ଭାବରେ ରହିପାରୁନଥିଲେ । ପଇସାବାଲା ଦେଖି ସମସ୍ତଙ୍କ ଆଖି ମାଲମତା ଉପରେ ରହିଥିଲା । ସେଇଟା ପାଇବାକୁ ସମସ୍ତଙ୍କ ପ୍ରତିଯୋଗୀତା । ସେକଥା ବାଗ୍ରୀବୁଢ଼ା ବୁଝିଥିଲା । ବଡ଼ ଅନୁଭବି ମଣିଷଟିଏ । ସରଳ, ସାଧାସିଧା । ଫିଧେ ଧୋତି, ପଞ୍ଜାବୀ । ବଡ଼ ନୀରଳସ ଜୀବନ ଯାପନ କରେ । ଜୀବନରେ କେତେ ଘାତ, ପ୍ରତିଘାତ ଦେଇ ଯିଏ ଏ ଶିଖରରେ ପହଞ୍ଚିଛି ସେ ପୁଣି କେଉଁ ସାହସରେ ନିଜକୁ ଜାହିର କରିବ ଧନଶାଳୀ ଦେଖାଇ ହୋଇ । ସେଥିପାଇଁ ସେ ସଦା ସତର୍କ । ଏ କଥା ସେ ଦାଦାଜୀଙ୍କୁ କେବେକେବେ କୁହେ ।

ଏଇ ଅଳ୍ପଦିନ ହେଲା ଯାହାହେଉ ବାଗ୍ରୀର ବୋତଲ ବନ୍ଧୁମାନେ କେଉଁଠୁ ଗୋଟାଏ ସ୍ତ୍ରୀଲୋକକୁ ଜୁଟେଇ ଦେଇଛନ୍ତି । ସବୁଦିନ ପାଇ ସ୍ତ୍ରୀଲୋକଟି ବାଗ୍ରୀ ପାଖରେ ରହିବ । ଘର ଦେଖିବ, ସବୁ ଖବର ବୁଝିବ । ବାଗ୍ରୀ ଅରାଜି ନଥାଏ । ଭାସିଯିବା ମଣିଷଟିର କୁଟାଖିଏକୁ ମଧ୍ୟ ଭରସା । ଯେତେ ଧନରତ୍ନ, ପ୍ରତିପତ୍ତି, ବ୍ୟାବସାୟ ଥିଲେ କ'ଣ ହେଲା, ଚାକରାଣୀଟାଏ ମିଳିବା କେତେ କଷ୍ଟ ତା' ସେ ବୁଝି ସାରିଛି । ପଇସା ଦେଇ ମଧ୍ୟ କିଣାଯାଇପାରେ ନାହିଁ ଚାକରାଣୀଠାରୁ ନିହତଲଗା ପରିଚ୍ଛନ୍ନତା, ସୁସ୍ୱାଦୁ ଖାଦ୍ୟ ରନ୍ଧନ । ଯେମିତି କି ତୁମ ବଡ଼ ଲୋକି, ଷ୍ଟାର୍ଟସେ ଏଇ ନିମ୍ନଶ୍ରେଣୀର ଲୋକଙ୍କ ହାତରେ । ସେମାନେ ଚାହିଁଲେ ଦୋହଲାଇ ଦେବେ ତୁମର ଷ୍ଟାଟସ୍ ପଣିଆ । ସେଥିପାଇଁ ସିନା ତାଙ୍କୁ ଭଲକଥା କହି ପିଠି ସାଉଁଳେଇ ରଖିବାକୁ ପଡୁଛି ।

ଏତେଦିନପରେ ସ୍ତ୍ରୀଲୋକଟିଏ ଆସିଛି । ଆଉ ହଟହଟା ହେବନି ବାଗ୍ରୀ । ସେ ସ୍ୱପ୍ନରେ ମସଗୁଲ୍ । ମନ ମୁତାବକ ଖାଦ୍ୟ ମିଳିବ । ଠିକ୍ ସମୟରେ ଚା' ପାନ ପହଞ୍ଚିଯିବ । ଚା' ଟିକିଏ ପିଇବାକୁ ଅପେକ୍ଷା କରିବାକୁ ପଡୁଥିଲା, ତା' ରହିବନି । ରାତିରେ ଖାଦ୍ୟ ତିଆରି କରି ଦେଇପାରିବ । ଆଗରୁ ସନ୍ଧ୍ୟା ସାତଟା ସୁଧା ତିଆରି କରି ପକାଉଥିଲା । ଥଣ୍ଡା ଖାଦ୍ୟ ତାକୁ ରୁଚୁନଥିଲା । ଅତଏବ ରାତି ନ'ଟା ପରେ ରାନ୍ଧିଲେ ଗରମ ରହିବ ।

କଳ୍ପନାରେ ଖୁସୀଖୁସୀ ଭାବଟିଏ ଲାଗି ରହିଥାଏ ବାଗ୍ରୀର । ପ୍ରକୃତରେ ଚାକରାଣୀ ତ ଇଏ ନୁହେଁ, କେଉଁଠୁ ରାଣୀଟାଏ ଅବା ପହଞ୍ଚିଲା ତା'ଘରେ । କେତେ ନିହତ ଲଗାଇ ଆସ୍ତୁଆସ୍ତୁ କାମରେ ମନ ଦେଇଦେଲା । ବାଗ୍ରୀ ବିସ୍ମିତ ହୁଏ । ବୟସ ଚାଳିଶର ଏଇ ଅସହାୟ ମହିଳାଟିକୁ ଦେଖିଲେ ସତରେ ଆର୍ଦ୍ର ହୋଇଯାଏ ତା'ର ହୃଦୟ । କେତେ ନିଷ୍ଠାବାନ୍ । କାହାର ବୋହୂ, କାହାର ଝିଅ ଇଏ । ତା'ର ଛୁଆପିଲା କେଉଁଠି ? ସେସବୁ ଭାବି ସେ ଅନ୍ୟମନସ୍କ ହୋଇଯାଏ । କେବଳ ନାଆଁଟିରୁ ଜାଣିଥାଏ ସେ ଉଚ୍ଚ ଜାତିର । ତାକୁ ସମସ୍ତେ ଶିଲା ଡାକନ୍ତି ।

ପ୍ରକୃତରେ ତା' ନାଆଁ ଶିଲାକି ନାହିଁ କିଏ ଜାଣେ ? ତା'ର ବା କେଉଁ ପରିଚୟ ପତ୍ର ସେ ରଖିଛି । ତା' ଗାଁର ଠିକଣା ସେ ଯାହା କହୁଛି ତା' ଯେ ଠିକ୍ କିଏ କହିପାରିବ ? ହେଲେ ଶିଲାର ମୁହଁକୁ ଦେଖିଲେ ମନେହୁଏ ବଡ଼ ସରଳ । ମାୟାବୀ । କେମିତି ଆଚ୍ଛନ୍ନ କରିପକାଏ ତା'ର ସମଗ୍ର ଅସ୍ତିତ୍ୱ । ଚୁପ୍‌ଚାପ୍ ରାନ୍ଧେ, ଚୁପ୍‌ଚାପ ଘର ସଜାଡ଼େ । ଠିକ୍ ସମୟରେ ଖାଇବା ଟେବୁଲ୍ ଉପରେ ସଜେଇରଖେ ଖାଦ୍ୟ । ପାଣିଗ୍ଲାସ୍ । ଲୁଣ, ଲଙ୍କା, କାଗେଜି । ପୋଛିଥାଏ ଟେବୁଲ୍‌ଟା ଖୁବ୍ ପରିଷ୍କାର କରି । ଯେମିତି ଗୋଟାଏ ପରିଚ୍ଛନ୍ନ ରୁଚି । ବାଗ୍ରୀ ଆଚମ୍ବିତ ହୁଏ । ଏତେ ଦିନ ପରେ କେଉଁ ଦେବତାର ମହିମାରେ ସେ ପାଇଲା ଶିଲାକୁ । କେମିତି ଏତେ କମ୍ ଦିନ ଭିତରେ ବୁଝିନେଲା ତା'ର ରୁଚି । କେତେ ଲୁଣ ପକାଇବା ଦରକାର ତରକାରୀରେ । କେତେ ମସଲା । ସେ ଆଶ୍ଚର୍ଯ୍ୟ ହୁଏ । ବେଳେବେଳେ ମଗ୍ନ ହୋଇଯାଏ ତା'ର ଏଇ ନିହତ ଲଗା କାମରେ ।

ବାଗ୍ରୀ ମୋହିତ ହୋଇ ପଡ୍ଡୁପଡ୍ଡୁ ପଚାରିବାକୁ ଇଚ୍ଛା ହୁଏ ତା'ର ଅତୀତ । ମନ ହୁଏ ପଶିଯିବାକୁ ତା' ଭିତରେ । ତା' ଭିତରର କେଉଁ ଗହୀର ଗୋପନ ବ୍ୟଥା ଭିତରେ । କିନ୍ତୁ ତା' ଭିତରେ ଯଦିଥାଏ ଗୋଟାଏ ସବୁଜ ଇଲାକା ? ଯଦି ସେ ସେଇଠି ରାଜହଂସୀପରି ଉଡ଼ି ବୁଲୁଥାଏ, ତା'ହେଲେ ସେ କ'ଣ ସହିପାରିବ ସେହି ସୁନ୍ଦରତା ? ହଠାତ୍ ଆନ୍‌ମନା ହୋଇଯାଏ ବାଗ୍ରୀ । ପୁନଶ୍ଚ ଭାବେ । ଏଇସବୁ ନାରୀମାନଙ୍କର କେବେ ବି ନଥାଏ ସବୁଜ ଭୂଖଣ୍ଡ । କେବଳ ଥାଏ ପ୍ରସ୍ତପ୍ରସ୍ତ ଦୁଃଖ । ଦୁଃଖର ଶିଳାଖଣ୍ଡ । ପଚାରି ଦେବ କି ଆଉ ତା'ର ସୁଦୀର୍ଘ ଜୀବନର ଇତିହାସ ? ଯଦିଓ ସେ ଜାଣେ ସେ କିଛି ସେଥିରୁ ପାଇବ ନାହିଁ । ଦୁଃଖର କାହାଣୀ ଶୁଣି ଅଯଥା ଭାରାକ୍ରାନ୍ତ ହେବ । ତଥାପି ମଣିଷ ବେଳେବେଳେ ଶୁଣେ ନିଜ ଭିତରୁ ଗୋଟାଏ ଅନ୍ତରଙ୍ଗ ସ୍ୱର । ସେହି ସ୍ୱରରେ ତା'ର ମନେ ହୁଏ ସେ ଶୁଣିବ ଅନ୍ୟର ଦୁଃଖସୁଖର କାହାଣୀ । ସେଇଟା ତା'ର ଅନୁସନ୍ଧିତ୍ସା, କି ଜଣକପାଇଁ ଆଣି ଦେଇଥାଏ ଯେଉଁ ନିଜର ନିଜର ଭାବଟିଏ, ସେଥିପାଇଁ ବଢ଼ିଯାଏ ଏ ନିଶା । ଭିତରକୁ ପଶିଯିବାର ନିଶା । ବୁଡ୍ ମାରିବାର ଇଚ୍ଛା । ଏମିତି କାହିଁକି ମନେ ହୁଏ ବାଗ୍ରୀକୁ । ପୁଣି ଭାବେ

ଥାଇ ପାରେ ତା'ର ସ୍ୱାମୀ, ସନ୍ତାନ । କିଛି ଦୁଃଖ ଥିବ । ଘର ଛାଡ଼ିଥିବ, ଏମିତି ଆଗରୁ କାହାକୁ ପଚାରିବାକୁ ଇଚ୍ଛା ହୋଇନାହିଁ । ଏଇ ନାରୀ କାହିଁକି କୁହୁକିନୀ ପରି ତାକୁ ଏମିତି ଆଚ୍ଛନ୍ନ କରି ବସିଛି । ବରଂ ତା'ର ନୀରବ ଆଚରଣ ତାକୁ ଆହୁରି ବ୍ୟଗ୍ର, ବ୍ୟଥିତ କରିଦେଉଛି ।

ଦିନବେଳା ଅହରହ ଲୋକଙ୍କ ଯିବା ଆସିବା ଲାଗିଛି । ତା'ର ବ୍ୟବସାୟ ସଂକ୍ରାନ୍ତୀୟ ଆଲୋଚନାମାନ ଲାଗିରହିଛି । ଚାରିଟା ବେଳକୁ ତ ଆରମ୍ଭ ହୋଇଯିବ ରଙ୍ଗର ଆସର । ସେତେବେଳକୁ ତା'ର ଚାରିଜଣ ବଟଲ ଫ୍ରେଣ୍ଡ ଆସି ଜୁଟିବେ । ସେମାନଙ୍କୁ ଆଜିକାଲି ତା'ର ଈର୍ଷା ହୁଏ । ଚରିତ୍ରହୀନ କେଉଁଠୁକାର । ଘର ସଂସାର କରି ଭଲ ମରଦ ସାଜିଛନ୍ତି ସ୍ତ୍ରୀ ଆଗରେ । ହେଲେ ସମସ୍ତଙ୍କ ଗୁଣ ସେ ଜାଣେ । ରାତିହେଲେ ବେଶ୍ୟାଳୟକୁ ଯାଇ ପଡ଼ିରହନ୍ତି । କେଉଁ ହୋଟେଲକୁ ସେ ଯା'ନ୍ତି ତା' ମଧ୍ୟ ଜାଣେ । ହେଲେ ବୟସ ସେମାନଙ୍କର ଅନେକଟା ତାରତମ୍ୟ, ତେଣୁ ସେ ଚୁପ୍ ରୁହେ । ଆସୁଛନ୍ତି ସେମାନେ, ତା'ର ନିଃସଂଗ ଜୀବନରେ କେତେ ଘଡ଼ି ସଙ୍ଗ ଦେଉଛନ୍ତି, ହେଉ ତାହା ନଷ୍ଟର ଦିଗ, କିନ୍ତୁ କିଛି ଘଡ଼ି ବଞ୍ଚିଯାଇ ହେଉଛି ତ ! କ'ଣ ହେବ ଏତେ ପଇସା ରଖି ? ନିଜପାଇଁ, ନିଜ ଅୟସ ପାଇଁ ଖର୍ଚ୍ଚ କରିବନି ତ କାହା ପାଇଁ ସଞ୍ଚିବ ? ବାଗ୍ରୀର ଫ୍ରଷ୍ଟ୍ରେସନ୍ ସମୟେ ସମୟେ ମଦ୍ୟପାନ ସହିତ ବଢ଼ିଯାଏ । ଗୋଟାଏ ଏକଲା ଦ୍ୱୀପରେ ଯେମିତି ବୁଡି ଯାଇଥିବା କେଉଁ ନୌକାରୁ ଭାସିଯାଇ ସେ ଲାଗିଛି, କେହି କେଉଁଠି ନାହିଁ । ସେ ପ୍ରବଳ ଶବ୍ଦରେ ଡାକ ପକାଉଛି କିଏ ତାକୁ ଉଦ୍ଧାର କରିବାକୁ, ହେଲେ ନାଁ କେହି କେଉଁଠି ନାହିଁ । ଏସବୁ ଗୋଟାଏ ଗୋଟାଏ ଦୁଃସ୍ୱପ୍ନ ହୋଇ ତାକୁ ମାଡ଼ି ବସୁଛି । ଏ ଧନ, ଏ ଘରଦ୍ୱାର ତାକୁ ସବୁ ତୁଚ୍ଛ ଲାଗୁଛି ।

ବଟଲ ଫ୍ରେଣ୍ଡମାନେ ମଧ୍ୟ ବୟସ୍କ । ସେମାନେ ବାଗ୍ରୀଠାରୁ ପଇସାନେଇ ନିଜର ନିଶାକୁ ବଢ଼ାନ୍ତି । ଉପୁରୁ ଉଠାନ୍ତି । ସେମାନେ ଜାଣନ୍ତି ବୁଢ଼ାର ଦୁର୍ବଳତା । ସେ କେବେ ମନାକରି ପାରିବନି । ଅତ୍ୟଧିକ ନିଶା ଖୁଆଇ ତାକୁ ବୁଡାନ୍ତି ନାକଯାଏ । ନଷ୍ଟ କରିଦଅନ୍ତି ତା'ର ମଣିଷ ପଣିଆ । ତା'ର ଭାବିବାର ଶକ୍ତି ।

ସେଦିନ ଶିଲାକୁ ସେମାନେ ଡାକିଥିଲେ । ମଦରେ ବରଫ ପକାଇ ପେଗ୍ ସଜାଇବାକୁ ନିର୍ଦ୍ଦେଷ ଦେଇଥିଲେ । ଚେନାଚୁର, ମାଂସ ଇତ୍ୟାଦି ଥୋଇବାକୁ ବରାଦ କରିଥିଲେ । ବଡ଼ ଅଶ୍ଳୀଳଭାବେ ସେମାନଙ୍କ ଚାହାଣୀ ଘୂରିଯାଉଥିଲା ଶିଳାର ଶରୀର ଆବୋରି । ବାଗ୍ରୀବୁଢ଼ା ବୁଝିପାରିଥିଲା । ସେମାନଙ୍କ ଦୃଷ୍ଟି ଯେତେବେଳେ ଅସହ୍ୟ ହୋଇ ଉଠୁଥିଲା ସେ ତତ୍‌କ୍ଷଣାତ୍ କହିଲା- ଯା' ତୁ ଭିତରକୁ । ଅନ୍ୟକାମ କର । ଏଠିକୁ ଆସିବା ଦରକାର ନାହିଁ । ଶିଲା ଅନ୍ୟ ଘରେ ଯାଇ ବସିଥିଲା ।

ମିଃ ସିଂହଙ୍କର ତାଚ୍ଛଲ୍ୟ ହସ ଅଜାଡ଼ିହୋଇ ପଡ଼ିଥିଲା । ବାଃ...ବାଃ... । ଆମେ ଆଣି ମାଲ୍‌ଟାକୁ ଲୁଚେଇଲୁ ଭଲରେ ଟିକେ ରହିବେବୋଲି ବାଗ୍ରୀବାବୁ, ଅପଣ ଆମକୁ ଲାତ୍ ମାରୁଛନ୍ତି । ବାଗ୍ରୀ ମଦ ଖାଇଲେ ବି ସଂଯତ ଥାଏ ସମୟେ ସମୟେ । ଏତେଟା ଭାତୁଆ ସେ ନୁହେଁ । ମିଃ ତିୱାରୀ କହିଲେ ଚୁପ୍ କରନ୍ତୁ ମିଃ ସିଂହ । ଏସବୁ କଥା ବୟସ୍କ ମଣିଷ ଆଗରେ କହିବା ଉଚିତ୍ ନୁହେଁ ।

ମିଃ ସିଂହ ରାଗି ଖପା-ଆରେ ମୋତେ ତୁମେ ସରାଫତ୍ ଶିଖାଇବ । ତୁମେ ଜର୍ଦ୍ଦା ଡିଲର୍ । ତୁମେ ତାଙ୍କୁ ଡରିବ । ମୋ ସହିତ କି ସଂପର୍କ ତାଙ୍କ ବେପାରରେ । ମୋ ସହିତ ଖାଲି ଚିହ୍ନା ପରିଚୟ । ତୁମେ ତେଲ ମାର ବାଗ୍ରୀକୁ । ମୁଁ ଡରେନା । କହି ମିଃ ସିଂହ ଉଠି ଚାଲିଯାଇଥିଲେ । ଆଉ ଦୁଇଜଣ ବଟଲମେଟ୍ ମୁରୁକି ମୁରୁକି ହସୁଥିଲେ ମିଃ ସିଂହର ଏ ପ୍ରକାର ପ୍ରସ୍ଥାନରେ । ବାଗ୍ରୀବୁଢ଼ାକୁ ତେଲେଇବା ଢଙ୍ଗରେ କହିଲେ-ସାର୍ ଏମିତି ବେଳେବେଳେ ହୋଇଯାଏ । ଛାଡ଼ନ୍ତୁ ତାଙ୍କ କଥା । ଯାହାହେଲେ ବି ଆମ ଦଳିଆ ସେ । କାଲିଆସି ପୁଣି କ୍ଷମା ମାଗିନେବେ ଆପଣଙ୍କୁ । ମୁଁ କହୁଛି ।

ମିଃ ବାଗ୍ରୀ ଏଥର ଚୁପ୍ । ଯାହାହେଲେ ବି ବୟସ୍କ ଲୋକ । ହାତ ଯୋଡ଼ିବା ଭଙ୍ଗୀରେ କହିଲେ-ଠିକ୍ ଅଛି ଆମମାନଙ୍କ ସଂପର୍କରେ ଯେମିତି ଫାଟ ନଧରୁ । ଆପଣମାନେ କାଲି ଚାରିଟାବେଳେ ନିଃଶ୍ଚୟ ଆସିବେ । ମୁଁ ସିଂହ ସାଙ୍ଗରେ କଥାହେବି ।

ବାଗ୍ରୀ ସମସ୍ତଙ୍କୁ ବିଦାୟଦେଇ ଆସିଲା । ସେତେବେଳକୁ ଦାଦାଜି ମଧ୍ଯ ଯାଇ ସାରିଥିଲେ । ଏବେ ଢ଼େର ସମୟ କେବଳ ନିଜର । ସେ ଶିଳା ବସିଥିବା ଘରକୁ ଗଲା । ଶିଳା ବସିଥିଲା ଗୋଟାଏ ନିଶ୍ଚଳ ପ୍ରତିମାପରି । ସେ ସୋହାଗରେ ତା'ର ଗାଲରେ ହାତ ମାରିଦେଲା । ''ତୁ ରାଗିଲୁକି-ସେମାନେ ସେମିତି କ୍ଷଣିକରେ ମାତାଲାମି କରିବେ, ହେଲେ ତୁ ଡରିବୁନି । ମୁଁ ଅଛି ।''

ଏଥର ଶିଳା ହସିଲା ଉଚ୍ଛ୍ୱସିତ ହସ । ତାକୁ ବଡ଼ ହସ ଲାଗିଲା 'ମୁଁ ଅଛି' ଶବ୍ଦଟାରେ । ତେଷଠି ବର୍ଷ ବୁଢ଼ାର ଦମ୍ଭତଳେ ସେ ବଞ୍ଚିରହିବ ଚାଳିଶବର୍ଷିୟା ସ୍ତ୍ରୀ ଲୋକ ଜଣେ ? ହା...ହା... ହୋଇ ହସିଉଠିଲା ସେ । ବୁଢ଼ା କିଛି ବୁଝିପାରିଲାନି ।

ତା'ର ଯୁଆନ ବରଟାଏ ଥିଲା । ଏବେ ବି କେଉଁଠି ଥିବ ସେ । ଯିଏ ତାକୁ ଦେଇପାରିଲାନି ନିରାପତ୍ତା । କେଉଁଆଡ଼େ ଉଭାନ ହୋଇଗଲା । କହିଲା-ମୁଁ ପଞ୍ଜାବ ଯାଉଛି କାମ କରିବାକୁ । କେଉଁ କଣ୍ଟ୍ରାକ୍ଟର ସାଙ୍ଗରେ ଗଲା ଯେ ଗଲା, ନାଁ ଚିଠିପତ୍ର ଅଛି ନାଁ ଘରକୁ ଆସିବା ଅଛି । ବାଇଶ ବର୍ଷ ବିତିଗଲାଣି ତା'ର ବାହାରକୁ ଯିବା । ସେ ଫେରିଲାନି । କେତେ ମଣିଷ ଫେରୁଛନ୍ତି ଦେଶକୁ । ଆଉ କେତେକ

ଅତ୍ୟାଚାରରେ ମରିଯାଉଛନ୍ତି ସେ ଶୁଣିଛି। ମରମର ଅବସ୍ଥା ଦେଖିଲେ ଟ୍ରେନରେ ବସାଇ ଦେଉଛନ୍ତି, ଟ୍ରେନରେ ଆସୁଆସୁ ମରିଯାଉଛନ୍ତି। ସେମିତି କିଛି ହୋଇଗଲା କି ତା' ବରର ? କେଡ଼େ ଖୁସୀରେ ତା' ହାତ ଧରିଥିଲା। ସ୍ୱପ୍ନରେ ମସଗୁଲ ହୋଇଥିଲା ସବୁ ଝିଅଙ୍କ ପରି। ତା'ର ବାହାଘର। ବର ଚାକିରି ପାଇଛି ପଞ୍ଜାବରେ। ହେଲେ ନିୟତି ସହିଲାନି। ଗଲା ଯେ ଗଲା। ଆଉ ଫେରିବାର ନାହିଁ। ଅଠରବର୍ଷ ବୟସରୁ ବାହାଘର ହୋଇଥିଲା ତା'ର, ବାରବର୍ଷ ଅପେକ୍ଷା କରିଥିଲା। ଶାଶୁଘରେ କେଉଁ ତାକୁ ରଖିଲେ। ବର ନଫେରିବା ଦେଖି ତାକୁ ଉଲୁଗୁଣା ଦେଲେ। କଥାଏ କଥାଏ ଖିଟଖିଟ୍ ହେଲେ। ଶେଷକୁ ଗୋଇଠାମାରି ବିଦା କରିଦେଲେ ଶାଶୁଘରବାଲା। ତା' ଜୀବନରେ ରହିଲା କ'ଣ ? କି ସୁଖ ? ବାପା ଉପରେ ବୋଝ ହୋଇ କ'ଣ ବଞ୍ଚିବ ! ଦିନେ ଗାଁରୁ କେତେ ରେଜାଗଲେ ସୋଲାପୁର। କଣ୍ଟ୍ରାକ୍ଟ୍ରି କାମ ଚାଲିଛି। ମଜୁରୀ ମିଳିବ। ଜୀବନ ଢ଼ୋକେ ପାଣିରେ ରହିଯିବ। ସେଦିନ କି କରୁଣ ଅନୁଭବ। ଜନ୍ମମାଟି ଛାଡ଼ି ଚାଲିଯିବାର ଯନ୍ତ୍ରଣାରେ ତା'ର ଛାତି ହା...ହା...କାର କରି ଉଠିଥିଲା। କୁଆଡ଼େ ଯାଉଛି ସେ, କେଉଁ ଦେଶକୁ, ସେଠୁ ଫେରିବ କି ନାହିଁ ! ତା'ସେ ଜାଣି ନଥିଲା। ହେଲେ ଗରିବର ପେଟର ଦାୟଠାରୁ କିଏ ବା ବଡ଼ ହୋଇପାରେ ? କେଉଁ ମାନ ମହତ ? କେଉଁ ନାରୀତ୍ୱ ? କେଉଁ ସତୀତ୍ୱ ?

କଣ୍ଟ୍ରାକ୍ଟରଟା ପ୍ରକୃତରେ ଭୁଲେଇ ଆଣିଲା ଏତେ ଏତେ ସ୍ତ୍ରୀ ଲୋକଙ୍କୁ। ମଜଦୂର ଶ୍ରେଣୀୟ ସେହି ରେଜା ମାନଙ୍କର ବୁଝିବାର ଜ୍ଞାନ ନଥିଲା। ହଜାର ବାରଶହ ଟଙ୍କା ପାଇ ସେମାନେ ଖୁସୀଥିଲେ। ହେଲେ ତା'ର ଭାଗ୍ୟର କେଉଁ ପାପ ଭୋଗିବାକୁ ଥିଲା ! ମରଦଟା ଦେଶାନ୍ତରୀ ହେଲା ସତ, ହେଲେ ତା'ର ଇଜତ ଟିକକ କେଉଁ .ରହିଲା ? କଣ୍ଟ୍ରାକ୍ଟରର ଏଜେଣ୍ଟମାନେ ତାଙ୍କୁ ନେଇ କେଉଁ ଗୋପନ କୋଠରୀରେ ରଖିଲେ। ସେମାନଙ୍କ ଯୌନାଙ୍ଗର ଅଶ୍ଳୀଳ ଚିତ୍ରସବୁ ଉଠାଇଦେଲେ। କେହି କାନ୍ଦି ଉଠିଲେ ଠୋ...ଠୋ... ଚାପଡ଼ା କଷିଦେଲେ। ସେମାନଙ୍କର କାନ୍ଦିବାର ଅଧିକାର ନଥିଲା, ବିରୋଧ କରିବାର ଅଧିକାର ନଥିଲା। ସେମାନେ ପଣ୍ୟଦ୍ରବ୍ୟ। କ୍ରେୟ ହୋଇଯାଇଛନ୍ତି ହଜାର ବାରଶହ ଟଙ୍କାରେ। ସେମାନେ ଦାଦନ ଶ୍ରମିକ।

ଶିଲା ସେଦିନ ଜୀବନପ୍ରତି ନଛୋଡ଼ବନ୍ଧା ହୋଇଯାଇଥିଲା। ଆଖିରେ ତା'ର କାନ୍ଦିବାକୁ ମଧ ଲୁହ ନଥିଲା। ଖାଲି ଚିନ୍ତାଥିଲା କେମିତି ଦେଶର ମାଟି ଧରିବା। କେଉଁ ଉପାୟରେ ହେଲେ ସେ ଖସିବାକୁ ଚାହୁଁଥିଲା ସେହି ଭୟାନକ ମଣିଷ ମାନଙ୍କ ପାଖରୁ। ନରରୂପରେ ରାକ୍ଷସର ମନନେଇ ଯେଉଁମାନେ ତାକୁ ଲୁଣ୍ଠନ କରିଛନ୍ତି। ତାଙ୍କ ଭିତରୁ କେତେଜଣଙ୍କୁ ବମ୍ବେ ପଠାଇଦେଲେ। ସେଠୁ ସେମାନେ ଯିବେ ଚଢ଼ାଦରରେ ବିକ୍ରି ହେବା ପାଇଁ ଆରବ ଦେଶକୁ। ହେଲେ

ଭାଗ୍ୟକୁ ସେ ବଞ୍ଚିଗଲା । ଓଡ଼ିଆ ଲୋକଜଣେ ଦେଖା ହୋଇଥିଲେ ତା'ର । ନିଜ ଜାତିପାଇଁ ଦରଦଥିଲା ତାଙ୍କ ମନରେ । ତାଙ୍କୁ ବହୁ ଅନୁନୟ କଲାପରେ ସେ ଉପାୟ ଚିନ୍ତା କରିଥିଲେ । କହିଥିଲେ ଏଇ ଷ୍ଟେସନରୁ ତୁ ଯାଇପାରିବୁନି । ତାଙ୍କର ବ୍ରୋକରମାନେ ଘେରି ରହିଛନ୍ତି । ତୁ ମୋ ସାଙ୍ଗରେ ଯିବାକୁ ପଡ଼ିବ ଅନ୍ୟ ରାସ୍ତାରେ । ତୋତେ ମୁଁ ନାଗପୁରରେ ନେଇ ଛାଡ଼ିଦେବି । ସେଠୁ ଯେଉଁ ଟ୍ରେନ ଆସିବ ସେଥିରେ ଉଠି ତୁ ରାଉରକେଲା ଚାଲିଯିବୁ । ସେଠୁ ତୁ ଯେମିତି ହେଲେ ଗାଁରେ ପହଞ୍ଚିଯିବୁ । କିନ୍ତୁ ଓଡ଼ିଶା ସୀମାରେ ପହଞ୍ଚିଗଲେ ଯାଏ । ଏଠୁ ତ ମୁକ୍ତି । ସେହି ଦେବୋପମ ପୁରୁଷଟି ତାକୁ କେଉଁଠୁ ଉଦ୍ଧାର କରିଥିଲେ । ହେଲେ ଡରରେ ସେ ଆଉ ଘରକୁ ନୟାଗଡ଼ ଯାଇନଥିଲା । ରାଉରକେଲାରେ କାମ କରୁଥିଲା । ସିଂହବାବୁଙ୍କ ସାଙ୍ଗଜଣେ ତାକୁ ଜୁଟେଇଥିଲେ କଟକ ଆସିବାପାଇଁ । ଯାହାର ପଛରେ ଏ ପ୍ରକାର ଲୋମହର୍ଷଣକାରୀ ଘଟଣାମାନ ଘଟିଯାଇଛି, ସେ ବା ଏମିତି ଗୋଟାଏ ସୁରକ୍ଷିତ ବଳୟ ଭିତରେ କାହିଁକି ଡରିଯିବ ! ଯାହା ହେଲେ ବି ବାଗ୍ରୀର ସେମାନେ ବନ୍ଧୁ । ସେମାନଙ୍କର ଲୋଲୁପ ଦୃଷ୍ଟି ପଡ଼ିବା ସ୍ୱାଭାବିକ୍, ଯାବୋଲି ବୁଢ଼ାଲୋକ ଜଣେ ତାକୁ ନରମି କ୍ଷମା ମାଗିବା ଭଙ୍ଗୀରେ କଥାହେବେ । ତା' ସେ ପସନ୍ଦ କରେନା ।

ବାଗ୍ରୀବୁଢ଼ାର ଥରଥର ଶରୀର । ମଦର ନିଶା ଘାରି ସାରିଛି ତାକୁ । ଏବେ ସେ ଶୋଇ ରହିବ । ଉଠିବ ରାତି ବାରଟାରେ । ଶିଲା-ତା ନାଡ଼ି ନକ୍ଷତ୍ରର ଖବର ଟିକେଟିକେ କରି ରଖିଲାଣି । ସେ ବୁଢ଼ାର ନିଶାଗ୍ରସ୍ତ ଅବସ୍ଥାକୁ ଚାହିଁ ତା' ପିଠିକୁ ଘେରେଇ ହାତ ରଖିଲା । ଧୀରେ ଧୀରେ ନେଇ ଶୁଆଇଦେଲା ଖଟ ଉପରେ । ଗୋଡ଼ ସାଉଁଳି ଦେଲା । କାହିଁକି ସେ ଗୁଡ଼ାକ ଗିଳୁଛ ବୋଲି ମୃଦୁ ଧମକ ଦେଲା । ବାଗ୍ରୀ ହସିଲା । ତା' ହସରେ ଯେମିତି କରୁଣ କାହାଣୀଟିଏ ଲେଖା ହୋଇଥିଲା । ଏଇ ମଦ ଖାଇବାକୁ ନେଇ ସେ ଆଜି ବାସ୍ତୁହରା ପରି ଘୂରୁଛି । ଘରଦ୍ୱାର, ପୁଅବୋହୂ, ନାତି ସମସ୍ତେ ତା'ଠାରୁ ଆଜି ଦୂରରେ, ଯଦିଓ ଏଇ ଛୋଟିଆ ସହରର ଅଳ୍ପ ଦୂରତ୍ୱରେ ରହିଛନ୍ତି, ତଥାପି ମାନସିକ ସ୍ତରରେ ସେମାନେ କେତେ ଯେ ଦୂରରେ ! ମନେହୁଏ ବେଳେବେଳେ ଆଦୌ କେହି ନାହାନ୍ତି ଯେମିତି ! ବାଗ୍ରୀ ଛଟପଟହେଲା ।

ତା'ର ମାନସପଟରେ ଭାସିଆସିଲା ଗୋଟାଏ କ୍ରୁର ତାଚ୍ଛଲ୍ୟ ହସ । ସେ ହସ ତା'ର ବୋହୂର । ଏକମାତ୍ର ବୋହୂର । ସେ ହସୁଛି ତା'ର ତ୍ରିତଳ ପ୍ରାସାଦରୁ । ''ଦେଖରେ ଦେଖ...ବୁଢ଼ାକୁ ଦେଖ । ଲାଜ ସରମ ନାହିଁ । ମଦଖାଇ ଟଳଟଳହୋଇ ଗୋଡ଼ ପକାଉଛି । ରାତି ଗୋଟାକରେ ଥିଲା ଘରକୁ ଫେରିବାକୁ ? ମଦୁଆ କେଉଁଠୁକାର ।''

ସେଦିନ ବାଗ୍ରୀ ଥମକି ଛିଡ଼ାହୋଇଯାଇଥିଲା । ତୀକ୍ଷ୍ଣ ବର୍ଶାର ଫାଳଟାଏ ଯେମିତି ତା' ଛାତିତଳେ ପଶି ଯାଇଥିଲା । ଆତ୍ମ-ସମ୍ମାନ ତା'ର ତିଳତିଳହୋଇ ସେଇଠି କଟି ବିଛାଡ଼ିହୋଇ ପଡ଼ିଥିଲା ଚଟାଣ ଉପରେ । ଧପକରି ନିଶାଟା ଛାଡ଼ିଯାଇଥିଲା । କିଏ କହିଲା ଏ କଥା ? ନିଜର ସନ୍ତାନ । ନିଜର ଏକମାତ୍ର ପୁଅର ସ୍ତ୍ରୀ ? କେତେ ଗେଲବସରରେ ଯେଉଁ ପୁଅକୁ ସେ ବଢ଼ାଇଥିଲେ । ସୁନ୍ଦରୀ ସ୍ତ୍ରୀକୁ ବାହାଦେଇଥିଲେ । କେତେ ବିଶ୍ୱାସ ରଖିଥିଲେ ବୋହୂଟିଏ ଆସିବାପରେ ସେ ଦୁଃଖ ଭୁଲିଯିବେ ! ଅଥଚ ଏତେ ବଡ଼ ତିନିମହଲା କୋଠା ଭିତରେ ସେ କାହିଁକି ନିର୍ଜନ ଦ୍ୱୀପ ପାଲଟି ଗଲେ ? କାହିଁକି ଏଇ ମାତ୍ର ଛୋଟିଆ ସଂସାରଟିରେ ନିଜକୁ ଭସାଇ ଦେଇପାରିଲେନି ? ହଁ... ଆକସ୍ମିକ ତାଙ୍କର ପତ୍ନୀ ବିୟୋଗ ହୋଇଥିଲା । ବିମଳା ଚାଲିଗଲା ତା'ବାଟରେ । କାଳ ହରଣ କରିନେଲା ତାକୁ । ହେଲେ ସେ ନିଜକୁ ବୁଝାଇ ପାରିଲେନି । ନିଃସଙ୍ଗତାର ଏଇ ମହାସମୁଦ୍ର ଉପରେ ସେ କେତେଅବା ଭସେଇବେ ନିଜର ନୌକା ଦିଗହୀନ ସମୁଦ୍ରରେ ? ନିଜର ଲକ୍ଷ୍ୟପଥ ହଜିଗଲା । ସେଥିପାଇଁ ସିନା ନିଜକୁ ଭୁଲିବାକୁ ଚାହୁଁଥିଲେ । ପାରହେବାକୁ ସମୟକୁ । ମଦ୍ୟପାନ କରିବା ଆରମ୍ଭ କରିଦେଲେ । ଆଉ ପଇସାର ଜୋର ଯେଉଁଠି ସେଠି ମଦୁଆ ସାଥୀ ହିଁ ଆପେଆପେ ଜୁଟିବେ ଶାଗୁଣା ଘେରିଲାପରି । ସେଥିପାଇଁ ତାଙ୍କର ଆଜି ଅନେକ ମଦ୍ୟପ ସାଙ୍ଗ । ସେ ଜାଣେ ସେମାନେ ସମସ୍ତେ ଆସିବେ ତାଙ୍କ ପାଖକୁ । ପଇସା ଝାଡ଼ିବେ । ହା...ହଲ୍ଲା କରିବେ । ଆଉ କାମ ସରିଲେ କିଏ କୁଆଡ଼େ ଯିବେ । କିନ୍ତୁ ନିଃସଙ୍ଗତାର ଜ୍ୱାଳା ? କିଏ ହରଣ କରିବ ?

କେଉଁ ପୁଅ ବୋହୂ ହରିବେ ତାଙ୍କର ଦୁଃଖ ? ବରଂ ଏଇ ମଦଖିଆକୁ ସେମାନେ ସହିପାରିଲେ ନାହିଁ । ଗାଳିଗୁଳଜ କଲେ । ଗରଗର ହେଲେ । ବାପହୋଇ କେମିତି ସହିବେ ସନ୍ତାନ ସାମନାରେ ଅପମାନିତ ହୋଇପଡୁଥିବା ବ୍ୟକ୍ତିସତ୍ତାକୁ ? ସେଦିନ ରାତିରେ ଫେରିବା ଡ଼େରି ହୋଇଯାଇଥିଲା । ଅପେକ୍ଷା କରି ବୋହୂ ଠିଆହୋଇଥିଲା । ନିଶାର ଜୋରରେ ଟଳମଳ ପାଦ ତାଙ୍କର । ତାଚ୍ଛଲ୍ୟ ସେହି ହସ । "ମଦୁଆକୁ ଦେଖରେ ଦେଖ ।" ଅବା ଦ୍ରୌପଦୀର ତାଚ୍ଛଲ୍ୟ ହସ ଝରିପଡୁଛି ଇନ୍ଦ୍ରପ୍ରସ୍ଥର ପାଣିକୁଣ୍ଡରେ ଖସିପଡ଼ିଥିବା ଦୁର୍ଯ୍ୟୋଧନପରି । ସେହି ତାଚ୍ଛଲ୍ୟ ହସଟା ଏତେ ମର୍ମଭେଦୀ, ଏତେ ଆତ୍ମ-ସମ୍ମାନକୁ ଚିରି ଖଣ୍ଡଖଣ୍ଡ ଅବା କରିଦେଇଥିଲା ସେଦିନ । ଅବାକେଉଁ ଆଗ୍ନେୟଗିରିର ଗର୍ଭରୁ ଉଠି ଆସୁଥିବା ଘଡ଼ଘଡ଼ ଶବ୍ଦପରି ହଲେଇଦେଇଥିଲା ବାଗ୍ରୀକୁ । ନିଜର ଔରସରୁ ଜାତ ସନ୍ତାନ । ତା'ର ବୋହୂହୋଇ ଏ ପ୍ରକାର ଅପମାନ କରିବ ତାଙ୍କୁ । ଯେଉଁଠି ଏ ପଇସା, ଏ ଘର, ଏ ପ୍ରତିପତି ସବୁ ତାଙ୍କର । ସେହିଦିନୁ ଆତ୍ମ ସମ୍ମାନର ଦହନରେ ସେ ଘର ଛାଡ଼ିଥିଲେ ।

ହେଲେ ଏ କି ପ୍ରକାର ମୋହ ମଣିଷର । ରାଗରେ, ଅଭିମାନରେ ଯେତେ ଦୂରେଇ ରହିଲେ ବି ତା'ର ଜ୍ୱାଳା ବେଶୀବେଶୀ ହୋଇ ତାଙ୍କୁ ଜାଳୁଛି । ରକ୍ତର ଟାଣ କ'ଣ ଏତେ ତୀବ୍ର ? ନିଜ ରକ୍ତରେ ଗଢ଼ା ପ୍ରତିମାର ପାପପୁଣ୍ୟକୁ ପୁନଶ୍ଚ ମିଶାଇ ଟାଣିହୋଇଯିବାର ପ୍ରଗାଢ଼ ଇଚ୍ଛା ମଣିଷର ବେଶୀ ? ହୁଏତ ହୋଇପାରେ ପ୍ରବୃତ୍ତି । ହୁଏତ ହୋଇପାରେ ତାହା ଇନ୍ଦ୍ରିୟର ବିଚକ୍ଷଣ ପ୍ରଭୁତ୍ୱ ବିସ୍ତାର । ଯେତେ ଗୀତାରେ ଭଗବାନ ବୁଝାଇଲେ ବି ନିଷ୍କାମ ମନଟିଏ ମଣିଷର ଆସୁନାହିଁ କାହିଁକି ? ବରଂ ସେ ଏ ବୟସରେ ଆହୁରି ମାୟାର ଶିକାର ହୋଇପଡୁଛନ୍ତି । ମଦ ଖାଇଖାଇ ଇନ୍ଦ୍ରିୟ ଦୁର୍ବଳ ହୋଇଗଲାଣି । ଶରୀର ଫମ୍ପା ପାଲଟି ଯାଉଛି । ଦୁଃଖ, ନୈରାଶ୍ୟ ବଢ଼ିଚାଲିଛି । ତଥାପି କମିନି ପୁଅବୋହୂଙ୍କ ପ୍ରତି ଆକର୍ଷଣ । ଜୀବନରେ ଏ ପଇସାର ପାହାଡ଼ ଉପରେ ବସିବାଟା ଯେମିତି ଭାଗ୍ୟର ଅଟ୍ଟହାସ୍ୟ ପରି ମନେ ହେଉଛି । ତା' ଭିତରୁ ଖସି ସେ କେଉଁଠିକୁ ଦୌଡ଼ିବେ ? ବରଂ ବେଶୀବେଶୀ ହୋଇ ପୋତିହୋଇ ପଡୁଛି ଗୋଡ଼ ତାଙ୍କର ପାପର ଇଲାକାରେ । ସେହି ପାପର କୁଣ୍ଡରେ ବାଗ୍ମୀକୁ ବୁଡାଇ ଉଠାଇ ଖେଳୁଛନ୍ତି ତା'ର ମଦ୍ୟପ ସାଥୀ । ସେମାନଙ୍କ କବଳରୁ ତା'ର ମୁକ୍ତି କାହିଁ ?

ସେ ଆଜି ଶିଲାକୁ ଏସବୁ ବୁଝାଇ ପାରିବ ନାହିଁ । ଶିଲା ତା'ର ଯଥେଷ୍ଟ ସେବା କରୁଛି । ମନ ମୁତାବକ ଖାଇବାକୁ ଦେଉଛି । ମୋଡ଼ାମୋଡ଼ି କରିଦେଉଛି । ହେଲେ ସେ ତ ବେପାରୀ । କାହାକୁ ବିଶ୍ୱାସ କରିବେ ? ଶିଲା ତାଙ୍କୁ ଯେତିକି ଟାଣୁଛି ସେତିକି ସନ୍ଦେହ ଆସୁଛି ତା' ଉପରେ । ଟଙ୍କାର ହସାବ କିତାବରେ ଜୀବନକୁ ଖେଳି ଆସିଛନ୍ତି ଯିଏ , ଏ ନାରୀ ଭିତରେ ଯେ କେଉଁ କପଟଚାରିତା ନଥିବ କିଏ ଜାଣେ ? ବାଗ୍ମୀକୁ ନିଦ ଲାଗି ଆସୁଛି । ଶିଲା ଏବେ ବି ବସିଛି ତା' ପିଠିକୁ ଭରଦେଇ । ବାଗ୍ମୀଜାଣେ ଜୀବନର ଏଇ ଢଳନ୍ତ ବେଳାରେ ସେ ଉପନୀତ । ତା'ର ନାରଙ୍ଗୀ ଆଭାରେ ଶିଲା ବିମୋହିତ ହେଲେ ବି ସେ ଜାଣିସାରିଛି ଯା ପରର ଅନ୍ଧକାର ଆସିଯିବ । ତା' ମନରେ କାହିଁକି ମାଡ଼ି ଆସୁଛି ସନ୍ଦେହର ଜୁଆର । ଚାକରଣୀଟା ତା'ର ଏତେ ଯତ୍ନ କାହିଁକି ନେଉଛି ? ତାକୁ ଭରଦେଇ ବସିନି ଯେ କେତେବେଳେ ତା'ର ଭାରରେ ସେ ଭୁଲୁଣ୍ଠିତ ମଧ୍ୟ ହୋଇଯାଇପାରନ୍ତି । ଯାହାହେଲେ ବି ପର ମଣିଷ ସେ । ହୁଏତ ତା'ର ଲକ୍ଷ୍ୟଥିବ ଚାବି ଉପରେ । ସେହି ଚାବିଟି ପାଇଗଲେ ତା'ର ସ୍ନେହ ସୋହାଗ, ଆଦର ବୁଦ୍‌ବୁଦ୍‌ପରି ଫାଟିଯିବ । ଏଇଟା କ'ଣ ଆଉ ହୋଇପାରେ ସେ ଏ ବୟସରେ ତାଙ୍କ ସହ ପକ୍ଷ ହଲାଇ ଦୂର ଆକାଶକୁ ଉଡ଼ିଯାଇ ପାରିବ ନୀଡ଼ ରଚନା କରିବାକୁ ? ସବୁ ମଣିଷ ଭିତରେ

ରହିଛି ସ୍ୱାର୍ଥ । ତା' ସେ ବୁଝିଛନ୍ତି । ସେଥିପାଇଁ ଦେହ ସୁଖ ଦେଇ ଶିଳା ତାଙ୍କୁ ଫସାଇବାକୁ ଚାହୁଁଛି । ହେଲେ ଏବେ ସେ କେଉଁ ମାନସମ୍ମାନକୁ ଭୟ କରନ୍ତି । ଯେତିକିଦିନ ସ୍ତ୍ରୀ ଲୋକଟାର ସଂସର୍ଗରେ ଚଳିଯିବ ଯାଉ । ତା'ପରେ ଜୀବନ କୁଆଡ଼େ ଯିବ ଦେଖାଯିବ ।

ଶିଳା ! ଚାକରାଣୀଟାଏ । ନାଁ...ଇଏ ଯିଏ ବସିଛି ନାରୀଟାଏ । ଲହୁଣୀ ପିତୁଳାଟାଏ । ତା'ର ପାପୁଲି ଘୂରୁଛି ତାଙ୍କ ପିଠି ଉପରେ । କୁହୁକିନୀର ହାତପରି । କେଉଁ ଯାଦୁମନ୍ତ୍ର ପରି ତାଙ୍କୁ କାବୁ କରି ଦେଉଛି । ମଦର ନିଶା, ତା' ସାଙ୍ଗରେ ଯାର ମାୟାଚ୍ଛନ୍ନ ଶରୀର । ବାଗ୍ରୀର ସତ୍ତାଅବା ଲୋପ ପାଇଯିବ ନିମିଷକେ । ବାଗ୍ରୀ ଅନ୍ଧକାରରେ ତଳେଇଯାଏ ଏମିତି ।

କିନ୍ତୁ ସୁଖର ଦିନ ଅବା ରହିଲା କେଉଁଠି ! ସିଏ ହେଉ ପଛେ ଚାକରାଣୀଟାଏ । ଯେଉଁ ମଦ୍ୟପ ସାଙ୍ଗମାନେ ତାଙ୍କୁ ସଙ୍ଗ ଦେଉଥିଲେ, ସେହିମାନେ ହିଁ ଦେଖିସହି ପାରିଲେନି ତାଙ୍କ ସୁଖ । ତାଙ୍କ ପୁଅ ଶାନ୍ତନୁ ଆଗରେ ସବୁକଥା କହି କୁତ୍ସାରଟନା କଲେ । ବୁଢ଼ା ବୟସରେ ଗୋଟାଏ ବେଶ୍ୟାକୁ ଘରେ ରଖି ତୁମର ନାଆଁ ପକାଉଛନ୍ତି କହି ଟିହାଁଇଦେଲେ ।

ଶାନ୍ତନୁ, ଯିଏ ବାପର ଅଲଗା ଘରେ ପାଦ ରଖିବାକୁ କୌଣସି ଦିନ ଭଲପାଏ ନାହିଁ, ସବୁବେଳେ ଦୂରରେ ରହିଥାଏ, କେଜାଣି କାହିଁକି ସେ ସହିପାରିଲାନି ପିତାର ଅଧଃପତନକୁ । ଦିନେ ସେ ପହଞ୍ଚିଲା ଦଳବଳ ନେଇ ବାଗ୍ରୀର ସାମନାରେ । ଦେଖିଲା ସତକୁ ସତ ଚାଳିଶି ବର୍ଷିଆ ସ୍ତ୍ରୀ ଲୋକଟାଏ ତା'ର ବାପ ପାଖରେ ଅବାଧ ପ୍ରବେଶ କରି ତାଙ୍କୁ ଅକ୍ତିଆର କରିଛି । ଖୁବ୍ ଜମେଇ ରହିଯାଇଛି ନିଜ ଘରପରି ।

ସେଦିନ ଶାନ୍ତନୁର ରାଗ ପଞ୍ଚମ ହୋଇଗଲା । ଧମକା ଧମକି କରି ସ୍ତ୍ରୀ ଲୋକଟାକୁ ବିଦା କରିବାକୁ ଚିତ୍କାର କରି ଉଠିଲା । ଯଦି ୟାରି ପାଲରେ ପଡ଼ି ଧନ, ସମ୍ପତ୍ତି ତା' ନାଆଁରେ କରିଦେଲା ପୁରା ଦାଣ୍ଡରେ ବସିବେ ସେ । ସେଦିନ ରାତିରେ ଗୁଣ୍ଡାମାନେ ଶିଳାକୁ ଜୋରକରି ବାହାର କରିନେଇଥିଲେ । ବାଗ୍ରୀ କୌଣସି ପ୍ରତିବାଦ କରିପାରିନଥିଲା । ଯେମିତି ଦୁର୍ଦ୍ଧାନ୍ତ ହୋଇ ପୁଅ ଉଭା ହୋଇଥିଲା, ସେମିତି ପ୍ରସ୍ଥାନ କରିଥିଲା ।

□□□

## (୧୦)

ବାଗ୍ରୀ ଆଦିତ୍ୟଙ୍କୁ ଖୁବ୍ ସମ୍ମାନ କରେ । ମଦ୍ୟପ ସାଙ୍ଗମାନେ ଆସିବା ପୂର୍ବରୁ ଦାଦାଜୀ ଘରକୁ ଚାଲିଯା'ନ୍ତୁ, ତା' ସେ ଭାବନ୍ତି । ନହେଲେ ମଦ ଖାଇବାକୁ, ହା...ହଲ୍ଲା ହେବାକୁ ତାଙ୍କୁ ଏଠି ମାଡ଼ିପଡ଼େ । ଯାହା ହେଲେ ବି ବୟସ୍କ ଲୋକ । ସରକାରୀ ଚାକିରିଆ ଦିନେ ଥିଲେ । ଆଜି ସିନା ରିଟାର୍ଡ୍ ହୋଇ ପ୍ରାଇଭେଟ୍ କାମ କରୁଛନ୍ତି । ହେଲେ ଶିକ୍ଷିତ ମଣିଷ ପାଇଁ ସମ୍ମାନ ରହିବା କଥା ତ । ସେ ଖୁବ୍ ଅନ୍ତରଙ୍ଗ ମନେକରେ ଦାଦାଜୀଙ୍କୁ । ସମୟେ ସମୟେ ମନହେଲେ ନିଜ ଅତୀତ ଜୀବନର କଥା ଗପେ ।

ତାଙ୍କ ଘର ସୁଦୂର ବିକାନୀରରେ । ସେମାନଙ୍କ ବଂଶରେ ପ୍ରଥମେ ବ୍ୟବସାୟ ଶିଖିବା କାମ । ତା' ପରେ ପାଠପଢ଼ା । ଦଶ ବାରବର୍ଷ ବୟସରୁ ବ୍ୟବସାୟ ଶିଖେଇବା କାମଥିଲା ତାଙ୍କ ପିତାଜୀଙ୍କର । ସେ ସେମିତି ସମ୍ବଳଥିବା ବେପାରୀ ନୁହଁନ୍ତି । ତେଣୁ ତାଙ୍କ ଗାଁର କେତେ ଜଣ ବେପାରୀଙ୍କ ସାଙ୍ଗରେ ଚାଲିଆସିବାକୁ ହେଲା ବାହାରକୁ । ଗାଁ ଛାଡ଼ିବାର ସେହି କଷ୍ଟକର ମୁହୂର୍ତ୍ତମାନ ଏବେ ବି ଭୁଲି ନାହାନ୍ତି ସେ ।

ସେହି ବେପାରୀମାନେ କଲିକତାରେ ଖୁବ୍ ବ୍ୟବସାୟ କରୁଥିଲେ । ସେ ତାଙ୍କ ସାଙ୍ଗରେ କଲିକତାଯାଏ ଆସିଲେ ସତ, ହେଲେ ପରେ ଅକଥନୀୟ କଷ୍ଟକରିଛନ୍ତି । ଚାକିରି କରୁଥିଲେ ଜର୍ଦ୍ଦା ଦୋକାନରେ । ସେହି ଜର୍ଦ୍ଦା ଦୋକାନରେ କିଛି ବର୍ଷ ରହିବାପରେ ନିଜର ଭବିଷ୍ୟତ ଭାବି ସେ ଭୟ ପାଇଥିଲେ । କେତେ ଦିନ ବା ଅନ୍ୟର ଅଧୀନହୋଇ ଜୀବନ ଚାଲିବ ? ତାଙ୍କର ମନ ବୁଝିନଥିଲା । ଅହରହ ସ୍ୱାଧୀନ ଭାବରେ ବ୍ୟବସାୟ କରିବାର ସ୍ୱପ୍ନ ସେ ଦେଖୁଥିଲେ । ଏକଦା କଲିକତା ସହର ଛାଡ଼ି ସେ କଟକ ଆସିଲେ । ଏଠିକୁ ଆସିବା ତିରିଷବର୍ଷ ହୋଇଗଲାଣି ।

ଏ ସହରରେ ଆସି ସେ ସାଇକେଲରେ ବୁଲିବୁଲି ଜର୍ଦ୍ଦା ସପ୍ଲାଏ, କରିଛନ୍ତି । ଖଟିଖଟି ନିଜକୁ ନିଃଶେଷ କରିଛନ୍ତି । ବାକିରେ ବ୍ୟାପାର ଚଲେଇ ମହାଜନକୁ କେତେ ସୁଧ ଗଣିଛନ୍ତି । ସେଦିନ ତାଙ୍କର ମନେଅଛି । ପଇସାଟିଏ

କମେଇବା କେତେ କଷ୍ଟ ତା' ସେ ଜାଣନ୍ତି । ପଇସାଟିଏ ପାଇବା ଏତେ ସହଜ ନୁହେଁ । ମେହନତି ଦରକାର । ବିନା ମେହନତରେ ଆଜିକାଲିକା ପିଲା ଚାହାନ୍ତି କୋଟିପତି ହେବାକୁ । ଠକେଇକରି ମାରିନେବାକୁ । ହେଲେ ସେ ତାକୁ ନାପସନ୍ଦ କରନ୍ତି । ବଡ଼ହେବାକୁ ହେଲେ ନିଜକୁ ଗଢ଼ିବାକୁ ହୁଏ । ବିନାକଷ୍ଟରେ କୋଟିପତି । ଦେଖ ତୁମ ଓଡ଼ିଶାକୁ ଆଜି । କେତେ ଲୋନ୍ ସରକାର ନଦେଲା । ମଧ୍ୟମ ଶିକ୍ଷଠାରୁ ବଡ଼ ଶିକ୍ଷଯାଏ । କୋଟିକୋଟି ଟଙ୍କା ଉଡ଼ିଲା । ଯାହାର ରାଜନୀତି ବଳ ଅଛି ସେମାନେ ଧରିଲେ ମନ୍ତ୍ରୀଙ୍କୁ । ଯାହାର ଉପର ସ୍ତରର ଅଫିସର ଚିହ୍ନା ଅଛନ୍ତି ସେମାନେ କିଛି ମାରିଲେ । ହେଲେ କାହିଁ ଶିଳ୍ପ । ସବୁ ଟଙ୍କା ମାରି ବସିପିଡ଼ିଲେ । ବ୍ୟାଡ୍ ଲୋନ୍ ହୋଇଗଲା । ସରକାର ଋଣ କରୁଛି, ଋଣ ଦେଉଛି । ଦେଶର ଜନସାଧାରଣ ଉପରେ ସୁଧର ଭାର ପଡୁଛି । ହେଲେ ଯେଉଁମାନେ ଏ ଦେଶର ଧନକୁ ଲୁଟିନେଲେ, ସେମାନଙ୍କ ସଂଖ୍ୟା ବହୁତ କମ୍ । ମେହନତ ନାହିଁ, ଅଭିଜ୍ଞତା ନାହିଁ, କାମ କରିବାର ଇଚ୍ଛା ବି ନାହିଁ । କେତେଜଣ ଖୁବ୍ ସୁନ୍ଦର ଚକମକ ଅଫିସ ଖୋଲି ବସିଗଲେ । ଇଣ୍ଡଷ୍ଟ୍ରି ଆରମ୍ଭ କରିଦେଲେ । ମେସିନ୍ ଆଣି ବସେଇଦେଲେ । ହେଲେ ପ୍ରଡ୍‌କସନ । ମାର୍କେଟିଙ୍ଗ ଏସବୁ କାହିଁ ? ଧନ ଶୁଝି ପାରିବେ ସରକାରର ? ଆଉ ଦିନାକେତେ ପରେ ସେଠି ତାଲା ଝୁଲିବ । ତା' ପରେ ସରକାରୀ କଳର ବିଭିନ୍ନ ନିୟମ କାନୁନର ପାଲା । ଏତେ ଯାଏ ଯିବ କାହିଁକି ? ମୂଳରୁ ଠକି ନେବାର ମନୋବୃତ୍ତି ଏଠି । ଏସବୁ ଦାଦାଜୀ ବଡ଼ ଖରାପ । ଏଠି ମଣିଷଙ୍କର ଦେହ ଲଗାଇ ଖଟିବା ନାହିଁ । ସେଥିପାଇଁ ଭାଗ୍ୟଲକ୍ଷ୍ମୀ ମୁହଁମୋଡ଼ି ରହୁଛନ୍ତି । କାହିଁ ଉନ୍ନତି ? କେଉଁଠୁ ଉଠିପାରୁଛନ୍ତି ? କେହି ଜଣେ ଯଦି ଆମ ଜର୍ଦ୍ଦା ଲାଇନ୍‌ରେ ଭଲ ବୋପରୀଟାଏ ହୋଇ ଉଠିଲା ତାକୁ ବି ହିଂସାରେ ମର୍ଦ୍ଦର କରି ଦେଉଛନ୍ତି । ମଣିଷର ଲାଳସା, ଈର୍ଷା ମେଣ୍ଟୁନାହିଁ । ସେ ବେଳେବେଳେ ମନଖୋଲି ଗପନ୍ତି । ସାମାନ୍ୟ ଜର୍ଦ୍ଦା ବିକାଳୀ । ପାଠଶାଠ ତାଙ୍କର ନାହିଁ । ତଥାପି ସେ କେମିତି ଉଠିଛନ୍ତି ! ଆଜି ସମଗ୍ର ଓଡ଼ିଶା ପାଇଁ ସେ କିମିଶନ ଏଜେଣ୍ଟ । ତାଙ୍କ ପାଖରେ ପ୍ରଚୁର ଧନ ।

ଏଇ ସହରରେ ଦିନେ ସେ ଚାଳଘରେ ଭଡ଼ା ରହୁଥିଲେ । ଆଜି ତାଙ୍କର ତିନି ମହଲା କୋଠା । ଯେଉଁ ଯୁବକର ରୋଜଗାର ନାହିଁ କହି ତାଙ୍କ ଶ୍ୱଶୁର ଝିଅ ଦେବାକୁ ପସନ୍ଦ କରିନଥିଲେ ତାଙ୍କୁ, ସେ ଖଟି ଦେଖେଇ ଦେଇଛନ୍ତି ସେ କେତେ ଯୋଗ୍ୟ । ଶ୍ୱଶୁର ଥିଲେ ବଡ଼ଲୋକ । ତାଙ୍କର ଘର ଏକା ଗାଁରେ । ବିମଳାଙ୍କ ପାଇଁ ଦିନେ ଯୁବକ ପ୍ରାଣରେ ତାଙ୍କର ଚାଞ୍ଚଲ୍ୟ ଆସିଥିଲା । ବଡ଼ଲୋକର ଝିଅ । ଗରିବକୁ ବାହାଦେବା ପାଇଁ ଶ୍ୱଶୁର ସ୍ପଷ୍ଟ ମନାକରିଦେଇଥିଲେ । କିନ୍ତୁ ବିମଳାଙ୍କ ଦୃଢ଼

ଉକ୍ତିରେ ଶ୍ୱଶୁର ବାଧ ହୋଇଥିଲେ ବାହାଘର କରିବାକୁ । ଆଜି ଯେ କାମଟିଏ ନକରି ପାରିଛି ବୋଲି କାଲି ଯେ ଉପାର୍ଜନ କରିବ ନାହିଁ ତା'ର କୌଣସି ସଠିକତା ଅଛି ? କାହା ଭାଗ୍ୟ କେଉଁଠି ନେଇ କାହାକୁ ଥୋଇବ ତା' ଯେହେତୁ କେହି ଜାଣିନଥାଏ, କେମିତି ମନା କରିବେ ବାପା ବାହାଘର ପାଇଁ ? ବିମଳାଙ୍କ ଯୁକ୍ତିରେ ଶେଷକୁ ସେ ବାହା ହେଲେ । ବିକାନୀରର ଶୁଷ୍କ ମରୁଭୂମିରେ ଅବା ଓଏସିସ୍‌ଟାଏ ଜନ୍ମନେଲା ତାଙ୍କ ଜୀବନରେ । ଯେଉଁ ଗରିବ କହି ବିମଳାର ବାପା ତାଙ୍କୁ ନାକଟେକିଥିଲେ, ସେ ଦିନେ ବଦଳାଇ ଦେଲା ନିଜର ଭାଗ୍ୟକୁ ନିଜ ହାତରେ । ନହେଲେ ଜର୍ଦ୍ଦା କମ୍ପାନୀ କାହିଁକି ତାଙ୍କୁ ସାରା ଓଡ଼ିଶା ପାଇଁ ଏଜେନ୍‌ସି ଦେଇଥାନ୍ତା ? ମେହନତିର ଫଳ ଫଳିଛି । ଆଜି ତାଙ୍କ ହାତରେ କେତେ ବଡ଼ବଡ଼ ଶିକ୍ଷିତ ଲୋକ କ୍ରୀଡ଼ନକ । ପାଠ ନପଢ଼ିଲେ କ'ଣ ହେଲା । ପଇସାର ଲାଲଚରେ ଅନ୍ୟକୁ କରଗତ କରି ରଖିଛନ୍ତି ତ । ଆଉ ଗୋଟାଏ ଗରିବ ସ୍ତ୍ରୀ ଲୋକ ଯଦି ଆଖି ରଖିଥିଲା ତାଙ୍କ ପଇସା ଉପରେ ସେଇଟା ସ୍ୱାଭାବିକ୍ । ହେଲେ ତାଙ୍କ ନିଃସଙ୍ଗ ଜୀବନପାଇଁ ଘଡ଼ିଏ ସହାୟ ହୋଇ ଥିଲା ତ !

ଯେଉଁ ପୁଅବୋହୂ ତ୍ରିତଳ ପ୍ରାସାଦରେ ଅୟସରେ ଜୀବନ ବିତାଉଛନ୍ତି, ସେମାନେ କେବେ ଭାବିଛନ୍ତି କେତେ କଷ୍ଟରେ ତିଆରି ହୋଇଥିଲା ଘର । ବାପ ଆଜି ଦୂରରେ । ଭଡ଼ା ଘରେ ରହି ନିଃସଙ୍ଗ ଜୀବନ ବିତଉଛି, ମନର ଭାରରେ ସଢ଼ିପଚି ମରୁଛି, ମଦ ଗିଳୁଛି, ତା' କି ସେମାନେ ବୁଝନ୍ତି ?

ବାଗ୍ରୀର ଦୀର୍ଘନିଃଶ୍ୱାସ ବେଳେବେଳେ ଲୁହରେ ପରିଣତ ହୁଏ । ଜଣଙ୍କର ପଇସା ନଥିବାର ଅର୍ନ୍ତଦାହ, ଅନ୍ୟର ପ୍ରଚୁର ପଇସା ଥାଇ ବି ଅର୍ନ୍ତଦାହ । ଯେପରି ଦୁନିଆରେ ଦୁଃଖର ଶେଷ ନାହିଁ । କେବଳ ମଣିଷ ସୁଖ ପାଇବାକୁ ସ୍ୱପ୍ନ ଦେଖିହୁଏ ସତ, ହେଲେ କୌଣସି ନାଁ କୌଣସି ବାହାନାରେ ଦୁଃଖଟିଏ ହିଁ ପହଞ୍ଚିଯାଏ ସବୁ ସମୟରେ । ବଡ଼ ବିଚିତ୍ର ଦୁନିଆର ଗତି । ଜୀବନ ଏଠି ! ବଡ଼ ଆଚମ୍ବିତ ଲାଗେ ଏସବୁ ଭାବି ବସିଲେ । ତଥାପି ଯିବାକୁ ହୁଏ ଦୂର...ବହୁଦୂର । ସମୟ ଗଡ଼ିଚାଲିବା ସାଙ୍ଗରେ । ଭୁଲିବାକୁ ହୁଏ ଦୁଃଖ ।

ବାଗ୍ରୀବୁଢ଼ାର ଗୋରା ଚକ୍‌ଚକ୍ ଚେହେରା । ପନ୍ଧିଥାନ୍ତି ଧୋତି ଫଞ୍ଜାବୀ । ତୀକ୍ଷଣ ନାକ । ଦିବ୍ୟ ଆଭାର ଚେହେରା । ଅଥଚ ସେ କିଛି ଧରିରଖିପାରେନା । ଚାରିପଟେ ତା'ର ରଚନା ହୋଇସାରିଥାଏ ନଷ୍ଟନୀଡ଼ । ନଷ୍ଟ ଇଲାକାର ପକ୍ଷୀପରି ସେ ଛଟପଟ ହେଉଥାଏ ଜୀବନ ଖୋଜିବାରେ । ଅଥଚ ଖୋଜିନେଇ ପାରେନାହିଁ ଭଲ ସାଙ୍ଗସାଥୀ । ଯିଏ ବତେଇ ପାରନ୍ତା ସବୁଜ ଭୂଇଁରେ ସନ୍ଧାନ । କି ଯା'ନ୍ତା କେଉଁ ସାଧୁ, କି ସତ୍‌ସଙ୍ଗକୁ । ଶୁଣନ୍ତା କିଛି ଆଧ୍ୟାତ୍ମିକତାର କଥା ! ନଷ୍ଟର ରାସ୍ତାରୁ ମୁକ୍ତି ପାଇବାର ଉପାୟ ! ତା' କରେନା । ପଇସାର ଅନର୍ଥ, ଖେଳ ଚାଲିଥାଏ

ବାଗ୍ରୀକୁ ଘେରି । ନହେଲେ ପୃଥିବୀରେ କେଉଁ ମାର୍ଗ ବା ନାହିଁ ମଣିଷ ନିଜକୁ ସତ୍ ପଥରେ ନେବାକୁ ।

ବାଗ୍ରୀବୁଢ଼ା ତା' ଅଫିସ ଆଲମିରାରେ ଚାବି ପକାଏ ନାହିଁ । କ'ଣ ବା ଅଛି ସେଠି ! କେଇଟା ହିସାବ ଥିବା ରେଜିଷ୍ଟର, ଲେଡ଼ଜର । ଏଇସବୁ । କାହିଁକି ବା ଚାବି ଦେବ । ହେଇହେଇ ବ୍ୟାଙ୍କ୍ ଚେକ୍‌ବୁକ୍ ଗୋଟାଏ ଥାଏ । ତା ବା ବିନା ଦସ୍ତଖତରେ କେଉଁ କିଏ ନେଇ ଯାଉଛି ।

କେତେବେଳେ କେମିତି ଶାନ୍ତନୁ ଆସିଲେ ବି ବାଗ୍ରୀ ସାଙ୍ଗରେ ମନଖୋଲି କଥାହୁଏ ନାହିଁ । ମାପଚୁପ୍ କଥା । କେଉଁଠି ଯେମିତି ଦ୍ୱିରୁକ୍ତି, ଘୃଣାଭାବଟିଏ ଲାଗି ରହିଥାଏ ତା' କଥାରେ । ବାଗ୍ରୀ କିନ୍ତୁ ଖୁବ୍ ଖୁସୀ ହୋଇଯାଏ ତାକୁ ଦେଖି । ଆଖି ତା'ର ଚକ୍‌ଚକ୍ କରିଉଠେ ଆଶାରେ ଆଶାରେ । ଅପତ୍ୟ ସ୍ନେହର ଅନୁଭବଟିଏ କେଉଁ ଗହୀରରୁ ଉଠି ମିଳେଇଯାଏ ଶାନନ୍ତୁର ରୁକ୍ଷତାରେ । ପଇସା ଦରକାର ହୁଏ ତା'ର । ବାଗ୍ରୀ ଦାଦାଜୀଙ୍କୁ କୁହନ୍ତି ଚେକ୍ ଲେଖି ଦେବାକୁ । ଦାଦାଜୀ ଚେକ୍ ଲେଖି ଖୋଲା ଆଲମିରାରେ ରଖି ଦିଅନ୍ତି ପୁନଶ୍ଚ । ଯାହା ଆଗରୁ ଚାଲିଆସିଛି ତା ଚାଲେ । ବାଗ୍ରୀ ବି କେବେ କହିନାହିଁ ଚେକ୍ ବହିଟା ଲକ୍‌ଅପ୍‌ରେ ରଖିବାକୁ । ତାଙ୍କର ଆସିବା ଦିନଠୁ ସେମିତି ଖୋଲା ଆଲମିରାରେ ରହିଥାଏ ଚେକ୍‌ବହି । କାହାକୁ ପେମେଣ୍ଟ ଦେବାର ଥିଲେ ଆଦିତ୍ୟ ଚେକ୍ ଭରି ଦିଅନ୍ତି । ବାଗ୍ରୀ ସାଇନ୍ କରେ । କାମସାରି ଚାରିଟା ବେଳକୁ ଆଦିତ୍ୟ ଚାଲିଯାନ୍ତି । ହେଲେ ଚାରିଟା ପରେ ହିଁ ଆସନ୍ତି ବେଶୀ ଲୋକ । ଜମିଉଠେ ରଙ୍ଗର ଆସର । କେତେକିଏ ଆସନ୍ତି ଯା'ନ୍ତି ବାଗ୍ରୀର ସବୁ ମନେରୁହେ ନାହିଁ । ରଙ୍ଗର ନିଶାରେ ମନେ ରହିବା ବି ସମ୍ଭବ ହୁଏ ନାହିଁ ।

ଦିନକର କାମସରେ । ଆଦିତ୍ୟ ଫେରନ୍ତି ଘରକୁ । ତେଲ, ଲୁଣର ସଂସାର ଏମିତି ଚାଲୁଥାଏ ଟଣାଟଣିରେ ।

ଦିନେ ଅଫିସରେ ହଇଚଇ ହୋଇଯାଏ । ବାଗ୍ରୀବୁଢ଼ାର ବ୍ୟାଙ୍କ୍ ଆକାଉଣ୍ଟରୁ ପଚିଶ ହଜାର ଟଙ୍କା କିଏ ଉଠେଇ ନେଇଛି । ବୁଢ଼ା ଆଦିତ୍ୟଙ୍କୁ କିଛି ନ କହିଲେ ବି ଅନ୍ୟମାନେ ତା' ମନରେ ସନ୍ଦେହଟିଏ ରୋପଣ କରିଦେଇଛନ୍ତି । ଆଉ କିଏ ନେବ ? ସେହି ଲୋକ ଆକାଉଣ୍ଟସ୍ ଦେଖନ୍ତି । ଚେକ୍ ବହି ତାଙ୍କ ପାଖରେ ରୁହେ । ସେ ନେଇଥିବେ । ବାଗ୍ରୀ କିଛି ଭାବି ପାରେନାହିଁ । ଜଣେ ସରକାରୀ କର୍ମଚାରୀ ସମୟ ଅତିବାହିତ କରିବାକୁ ଏଠାକୁ ଆସନ୍ତି ପାର୍ଟ ଟାଇମ୍ କାମ କରିବାକୁ । ନ ହେଲେ କାମରେ ଯିଏ ଏତେ ସଚ୍ଚୋଟ, କଥାରେ ଭଦ୍ର ପରିଶୀଳିତ

ସେପରି ମଣିଷଟିଏ ଫ୍ରଡ୍ କରି ଟଙ୍କା କାହିଁକି ନେବ ? ଯାହାର ପୁଅ ଚାକିରି କରେ । ଝିଅ ବ୍ୟାଙ୍କ ଅଫିସର, ସେ ବା କାହିଁକି ଏମିତି କରିବ ? କେଉଁ ସାହସରେ ? ବ୍ୟାଙ୍କ ଠକେଇ କିଛି କମ୍ ନୁହେଁ । ସେଥିପାଇଁ ଜଣଙ୍କ ମନରେ ସାହସ ଦରକାର । ପୁଲିସ୍ କୋର୍ଟ, କଚେରୀ ଏସବୁ ଆଖି ଆଗରେ ରଖିବା ଦରକାର । ଜଣେ ବୃଦ୍ଧ ଲୋକ, ଉଚ୍ଚ ରକ୍ତଚାପରୋଗୀ, ଏସବୁ କଦାପି କରିପାରେ.? ବାଗ୍ରୀର କଥାକୁ ତା'ର ବଟଲ ଫ୍ରେଣ୍ଡମାନେ ଉଡ଼େଇ ଦେଇଥିଲେ । ସେମାନଙ୍କର ସମସ୍ତଙ୍କୁ ସନ୍ଦେହ । ପଇସା ସେମାନଙ୍କ ପାଇଁ ବହୁତ ବଡ଼ । ମଣିଷତ୍ୱ ନୁହେଁ । ଜଣେ ବୟସ୍କ ମଣିଷର ଯଦି ଠକେଇ କରିବାର ମନୋବୃତ୍ତି ରହିବ, ସେ କ'ଣ ପାଇଁ ହଜାର ଟଙ୍କାକୁ ଖଟିବ ? କେତେବେଳେ ସେ ବ୍ୟାଙ୍କ ଯା'ନ୍ତି ଯେ ଟଙ୍କାଟା ଉଠାଇନେଲେ ? ବାଗ୍ରିର ନାହିଁ ନାହିଁ ଭାବକୁ ଅନ୍ୟମାନେ ଗ୍ରହଣ କଲେ ନାହିଁ । ତା'ର ବ୍ରେନ ୱାସ କରିଦେଲେ ଅନ୍ୟମାନେ ।

ବୁଢ଼ା ଶେଷକୁ ଡକାଇଲା ଶାନ୍ତନୁଙ୍କୁ । ତା'ର ଏ ବିଷୟରେ କ'ଣ ରାୟ ହୋଇପାରେ । ଶାନ୍ତନୁ ଆସି କଥାଟା ଶୁଣି ଖପା ହୋଇଗଲେ । ଏ ଯାଏ କାହିଁକି ବ୍ୟାଙ୍କ୍‌ରେ କମ୍ପ୍ଲେଣ୍ଟ୍ ଲଜ୍ କରିନାହାନ୍ତି କହି ଗାଳି ଗୁଲଜ କଲେ । ବାପ ପୁଅଙ୍କ ଭିତରେ ସହଜେ ଦୁଇମେରୁର ଦୂରତ୍ୱ । ବିଚାରା ବାଗ୍ରୀ ତା' ଗାଳିରେ ଲୋଚାକୋଚା ହୋଇଗଲେ । ପୁଅ ସାଙ୍ଗେ ସାଙ୍ଗେ ଓକିଲ ଡକାଇ ସଲାହ ନେଲେ । ଆଦିତ୍ୟଙ୍କୁ ଦୋଷାରୋପ କଲେ । ସେ ଆକାଉଣ୍ଟାଣ୍ଟ । ତାଙ୍କ ବିନା ଜଣାତରେ କୁଆଡ଼େ ଗଲା ଗୋଟାଏ ଚେକ୍ । କାହିଁକି ତା' ଖାତାରେ ଏଣ୍ଟ୍ରିହେଲାନି । ତାଙ୍କ ପ୍ରତି ଅଭିଯୋଗ ପାଲଟା କଲେ । ଆଦିତ୍ୟ କିଛି ବୁଝି ପାରୁନଥାନ୍ତି । ଜୀବନରେ ତାଙ୍କର ବ୍ୟାଙ୍କ ଆକାଉଣ୍ଟଟାଏ କୋଡ଼ିଏ ବର୍ଷ ତଳେ ଥିବ କି କ'ଣ । ଜୀବନରେ ତାଙ୍କର ଟଙ୍କା ନାହିଁ କି ଆକାଉଣ୍ଟ । ପୁଣି ପଚିଶ ହଜାରର ମାମଲା । ସେ ତ ଗଲାପରେ ଏ ଘରକୁ ଅନେକ ଲୋକ ଆସନ୍ତି । ବୁଢ଼ା ବି ସେ ନଥିଲାବେଳେ ଚେକ୍‌ନେଇ ଲେଖା ଲେଖି କରେ । କେତେବେଳେ ଏଣ୍ଟ୍ରି ହୁଏତ କେତେବେଳେ ନୁହେଁ । ସବୁଗୁଡ଼ାକ ସିଷ୍ଟମେଟିକ୍ ମଧ୍ୟ ନୁହେଁ । ହେଲେ ଏଇ ଉଦ୍ଦଣ୍ଡ ପ୍ରକୃତିର ଲୋକଙ୍କ ରୁକ୍ଷ ବ୍ୟବହାରରେ ଆଦିତ୍ୟ ଘାବରେଇ ଗଲେ । ଶାନ୍ତନୁ ବାଗ୍ରୀ ଉପରେ ରାଗ ଗରଗର ହୋଇ ଓକିଲକୁ ଡାକି ଆଣିଲେ । ଡ୍ରାଫ୍‌ଟିଂ କରାଇନେଲେ । "ଇନ୍ କୋନାଇଭାନସ ଅଫ୍ ଆକାଉଣ୍ଟାଣ୍ଟ" ଏ କାମ ହୋଇଛି । ଏ ଡ୍ରାଫ୍‌ଟିଂରେ ଦସ୍ତଖତ କରିଥିଲା ବାଗ୍ରୀବୁଢ଼ା । ନିର୍ବିକାରରେ । ବିନା ପ୍ରଶ୍ନରେ ଯେ ଏଠି ଦାଦାଜୀଙ୍କ ପରି ବୟସ୍କ ଲୋକଙ୍କ ନାଆଁ କାହିଁକି ରହିଲା । କାଟି ଦିଆଯାଉ । ସେ କିଛି ବି କହିଲାନି । ବରଂ ପୁଅ ବୁଦ୍ଧିରେ ପଡ଼ି ସେ ନରମିଗଲା । ଆଉ ବ୍ୟାବସାୟୀ ବୁଦ୍ଧିରେ

ପରିଚାଳିତ ହୋଇଗଲା । ମନୁଷ୍ୟତ୍ୱ ତା' ଭିତରୁ ଉଭାନ୍ ହୋଇଗଲା । ବାପ, ପୁଅ ଏକାକାର ହୋଇଗଲେ ।

ବ୍ୟାଙ୍କ୍‌ରେ କଂପ୍ଲେଣ୍ଟ ଦେବାପରେ ପୋଲିସବାଲା ଆସି ପହଞ୍ଚିଲେ । ଆଦିତ୍ୟବାବୁ ପୋଲିସଙ୍କୁ ଦେଖି ଥରଥର । ଉଚ୍ଚ ରକ୍ତଚାପ ତାଙ୍କର । ହୃଦୟ ବଡ଼ ଦୁର୍ବଳ । ଜୀବନରେ କେବେ ଝୁଟ୍ ଝାମେଲାରେ ପଶନ୍ତି ନାହିଁ । ସାଧାସିଧା ଜୀବନ । ନାଁ ତାଙ୍କର ଥାଏ ପଇସା କମେଇ ବଡ଼ ହେବାର ଦୁର୍ବାର ଆକାଙ୍କ୍ଷା କି ସ୍ୱପ୍ନ । ପେଟ ଚାଖଣ୍ଡକ ପାଇଁ ସେ ଲଢୁଥାନ୍ତି କେଇଟା ଟଙ୍କାର ବଳୟରେ । ପେନ୍‌ସନ୍ ସମ୍ବଳରେ ଟାଣୁଥାନ୍ତି ଘର ସଂସାରର ରଥ । ତାଙ୍କ ଆଖିରେ ଏତେ ବଡ଼ ପୃଥିବୀ, ପୁଣି ଠକେଇ ଅର୍ଜନର, ସେକଥା କେଉଁ ସ୍ୱପ୍ନରେ ସେ ଭାବି ନଥିବେ । ପୁଲିସ୍‌ର ଏଇ ଖାକି ପୋଷାକ ବଡ଼ ଅସହ୍ୟ । ବଡ଼ ଭୟ ସୃଷ୍ଟିକାରୀ । ଯେ କେହି ଲୋକ ଦେଖିଲେ ବି ମନତଳେ ଦବିଯିବ । ଆଉ ନିରୀହ, ସରଳ ଆଦିତ୍ୟ ବା କେତେକେ ବାଦଯିବେ । ସେ ଅଚେତ୍ ହୋଇଯାଇଥିଲେ ହଠାତ୍ ଏଇ ଘଟଣାରେ । କିଛି ସମୟପରେ ସାଷ୍ଟାଂଗହୋଇ ତାଙ୍କ ସାଙ୍ଗରେ ଗଲେ ଥାନାକୁ । ଖରାବେଳ । ଚାରିଆଡ଼ ନୀରବ ନିଃଶବ୍ଦ । ବାଗ୍ମୀର ଆତ୍ମା ଏବେ ପରିତୃପ୍ତ । ଦାଦାଜୀଙ୍କୁ ପୋଲିସ ନେଇଗଲା । ସେ ଚାହିଁଲା ତାଙ୍କ ଛାଡ଼ିଯାଇଥିବା ସାଇକେଲ ଆଡ଼େ । ହ୍ୟାଣ୍ଡ ବ୍ୟାଗଟା ପଡ଼ିଥିଲା ତାଙ୍କ ସିଟ୍ ଉପରେ । ବଡ଼ କରୁଣ ଲାଗୁଥିଲା ସେହି ପରିତ୍ୟକ୍ତ ପରିବେଶ ।

ଚୁପ୍‌ଚାପ୍ ବାଗ୍ମୀ ବସିଲା ତା' ରୁମ୍‌ରେ । କ'ଣ କରିପାରିବ କିଛି ଭାବିପାରୁନଥାଏ । ଦୁଇଟାବେଳୁ ପୁଲିସନେଇ ଚାଲିଗଲାଣି ଦାଦାଜୀଙ୍କୁ । ଘରେ ଫୋନ୍ ନାହିଁ ତାଙ୍କର । ଏବେ ଛ'ଟା ବାଜିବାକୁ ଯାଉଛି । ସୌମ୍ୟ ଯାହା ଦୋକାନରେ କାମକରେ ସେ ଶାନ୍ତନୁର ସାଙ୍ଗ । ସେଠିକୁ ଜଣାଇ ଦେବାକୁ ହେବ ଭାବି ବାଗ୍ମୀ ଫୋନ୍ ଉଠାଇଲା ।

ହାଲୋ...ସୌମ୍ୟ... । ତୁମ ପିତାଜୀଙ୍କୁ ପୁଲିସ ନେଇଯାଇଛି । କ୍ୟାଣ୍ଟନମେଣ୍ଟ ଥାନାକୁ ଯାଅ ।

ବାସ୍ ଏଇ ଦୁଇପଦ କଥା । କ'ଣ ପାଇଁ, କାହିଁକି ତାହା କହିନାହିଁ । ସୌମ୍ୟର ମୁଣ୍ଡ କାମ କରୁନି । ଆଜି ଘରେ ବି କେହି ନାହାନ୍ତି । ବଡ଼ଭାଇ ସାଙ୍ଗରେ ବୋଉ ଚାଲିଯାଇଛି । ଭାଉଜ ଅଛନ୍ତି ଏକା । ସେ ବାପାଙ୍କୁ ଖୋଜି ନଥିବେ । ବାପା ବି ଘାବରେଇ ଯାଇଥିବେ ହୁଏତ । ଡରୁଆ ଲୋକ । କେତେବେଳେ ପଡ଼ିଶା ଘରକୁ ଫୋନ୍ କରିବେ ? ସେ କିଛି ଏଇ ମୁହୂର୍ତ୍ତରେ ଭାବି ପାରିଲାନାହିଁ । ତୁରନ୍ତ ଉଠିଯାଇ ଫୋନ୍‌କଲା ଭଉଣୀ ପାଖକୁ । ''ବାପା ଫେରି ନାହାନ୍ତି ଏ ଯାଏ'' । ଶୀଘ୍ର ଘରକୁ ଚାଲିଆସ ।

ଅର୍ପିତା କିଛି ବୁଝିପାରିଲାନି । ପଡ଼ିଶା ଘରେ ସେ ଫୋନ୍ ଧରେ । ତା'ର ପ୍ରତିକ୍ରିୟା ଜଣେଇ ପାରିବନି । ଅନ୍ୟମାନେ ମଧ୍ୟ ତା' ଉଦାସୀନତାରେ କିଛି ନ ବୁଝି ପାରନ୍ତି । ବରଂ ଚୁପ୍‌ଚାପ୍ ପଳାଇଯିବା ଭଲ ।

ସେ ଘଡ଼ିଏ ଚୁପ୍‌ହୋଇ ବସିପଡ଼ିଲା । ସାନଭାଇ କଲେଜ ଯାଇଛି । ଗପକରି ଫେରୁ ଫେରୁ ରାତି ଏଗାର ହୁଏ । ତାକୁ ଖବରଟା ଦେଇ ପାରିବନି । କ'ଣ କରିପାରେ ସେ ଏବେ ? ତା'ର ହାତଗୋଡ଼ ଅଚଳ ହୋଇଗଲା । ଏଣେ ଅନ୍ଧାର ଆସିଯାଉଛି । ବରଂ ଶୀଘ୍ର ବାହାରିଯିବା ଉଚିତ୍ ।

ସେ ଘର ତାଲା ପକାଇ ସାମ୍ନା ଘର ପାଢ଼ୀବାବୁଙ୍କ ଦରଜା ନକ୍ କଲା । ମିସେସ ପାଢ଼ୀ ଖୋଲିଲେ କବାଟ । ତା' ମୁହଁରୁ କ'ଣ ପଢ଼ିଲେ କେଜାଣି ଚାହିଁଲେ । ସେ କହିଲା-ଚାବିଟା ଆଜ୍ଞା ରଖନ୍ତୁ । ଗୋଟାଏ ଜରୁରୀ ଘଟଣାରେ ମୁଁ କଟକ ଯାଉଛି । ସାନଭାଇ କଲେଜରୁ ଆସିନି । ଆସିଲେ ଟିକେ ଚାବି ଦେଇଦେବେ ।

ମିସେସ୍ ପାଢ଼ୀ ବଡ଼ ଉଦାର । ସାହାଯ୍ୟକାରୀ । ଅନ୍ୟର ମନ ବୁଝନ୍ତି । ପରିବେଶ ପରିସ୍ଥିତିକୁ ହୃଦୟଙ୍ଗମ କରନ୍ତି । ତାଙ୍କୁ ସେ ସବୁବେଳେ ଈର୍ଷା କରିଥାଏ । ଅଫିସ୍ ଗଲାବେଳେ ଚାବି ଦେଇଯାଏ । ଭାଇ ଖାଇବାକୁ ଆସେ ଗୋଟାଏ ବେଳେ । ତାଙ୍କଠୁ ଚାବିନିଏ । ପୁଣି ଦେଇଯାଏ । ସେ ଫେରେ ପାଞ୍ଚଟା ପରେ । ପୁଣି ଚାବି ମାଗେ । କୁଆଡ଼େ ବାହାରକୁ ଗଲେ ଚାବିଟା ଦେଇଥାଏ । ସେ ଖୁସୀରେ, ବିନା ପ୍ରତିବାଦରେ ରଖନ୍ତି ଏବଂ ପ୍ରତିଥର ଚାବି ଦେବା ନେବାରେ ଦରଜା ଖୋଲନ୍ତି । ବେଳେବେଳେ ସାଢ଼େ ଗୋଟାଏ ରାତିରେ ଉଠି ଦେଖନ୍ତି ଚାବି ଠିକ୍ ଅଛି କି ନାହିଁ । କୋଲପ ଝୁଲୁଛି କି ଭଙ୍ଗା ହେଲା । ପାଢ଼ୀବାବୁ ଥଟ୍ଟା କରନ୍ତି ମିସେସଙ୍କୁ । ବାଃ ! ଭଲ ଜଗୁଆଳୀଟିଏ ମାଡାମ୍ ପାଇଛନ୍ତି । ରାତିଯାକ ପହରା ଦଉଛି ।

ସେଥିପାଇଁ ବଡ଼ କୃତଜ୍ଞତା ଜଣାଏ ସେ ମନେ ମନେ । ଭଗବାନ ପୃଥିବୀରେ ଏତେ ଭଲ ମଣିଷ ତିଆରି କରିଛନ୍ତି । ଅନ୍ୟର ସୁଖଦୁଃଖକୁ ନିଜର ଭାବି ଯେଉଁମାନେ ଆନନ୍ଦ ପା'ନ୍ତି । କେତେବେଳେ କେମିତି ସାନଭାଇ ନଥିଲେ ପୁଅକୁ ପଠାନ୍ତି ଶୋଇବାକୁ । ତାଙ୍କ ପୁଅ ଦୁଇଜଣ ଖୁବ୍ ବ୍ରିଲିଆଣ୍ଟ । ସେଣ୍ଟ୍ରାଲ୍ ସ୍କୁଲରେ ଫାଷ୍ଟ ହୁଅନ୍ତି । ବଡ଼ ଡିସିପ୍ଲିନ୍‌ଡ । ସେମିତି ଗୋଟାଏ ପଡ଼ୋଶୀ ପାଇ ଅର୍ପିତା ଧନ୍ୟ ହୋଇଥାଏ ।



# (୧୧)

ବାଦାମବାଡ଼ି ବସଷ୍ଟାଣ୍ଡରେ ଓହ୍ଲାଇଲା ଅର୍ପିତା । ଡିସେମ୍ବର ମାସର ରାତି । ପାଞ୍ଚଟା ବେଳକୁ ସୂର୍ଯ୍ୟ କେଉଁ ଖଂଜରେ ଲୁଚିଗଲେ ସେ ଦେଖିନି । ଅଥଚ ସନ୍ଧ୍ୟା ଗଡ଼ି ଆସି ରାତି ହେଲାଣି । କି ଗଭୀର ଅନ୍ଧାର । ସମୟଟା ଯେପରି ଶ୍ଳଥ । ଓଜନିଆ ମଧ । ଗଡ଼ିବାକୁ ଆଦୌ ଚାହେଁନି । ଘନ ହୋଇଯାଏ ନିବିଡ଼ ଦୁଃଖରେ ? ଯେମିତି କି କେଉଁ ଶୋଇପଡ଼ିଥିବା ଗାଁଟିର ବସରେ ପହଞ୍ଚିଯାଇଛି ଆଉ ଏକୁଟିଆ ଚାଲିଯିବାକୁ ହେବ ଅଗନା ଅଗନି ଗହୀରରେ । ଭୂତପ୍ରେତର କିଳିକିଳା ଶବ୍ଦ ଶୁଣି ଧୁକୁଧୁକୁ କରୁଥିବା ହୃତପିଣ୍ଡରେ । ନ ହେଲେ ଏ ସହରର ଅବସ୍ଥା ଏମିତି କାହିଁକି ଆଜି । ତା'ର ବିଷାଦ ତ ଏକକ । ତା' ବି କ'ଣ ବିଛାଡ଼ି ହୋଇପଡ଼ିଲା ଏ ସହରରେ ?

ସେ ହାତ ଘଡ଼ିକୁ ଚାହିଁଲା । ରାତି ସାଢ଼େ ଆଠଟା ହେବାକୁ ଯାଉଛି । ସେ ଚାଲିଚାଲି ଫାଟକଯାଏ ଆସିଲା । କେଇଟା ବସ ଏକାସାଙ୍ଗରେ ଘଡ଼ଘଡ଼ ଶବ୍ଦ କରୁଥିଲେ । ଅଥଚ ପାସେଂଜର ଖୁବ୍ କମ୍ ଥିଲେ । ସରକାରଙ୍କ ବିଜ୍ଞାପନ ପ୍ରତି ଏମାନଙ୍କର ପରୱା ନାହିଁ । ଶବ୍ଦ ପ୍ରଦୂଷଣରେ ବ୍ୟସ୍ତ । ତୈଳ ସଂକଟର ସମସ୍ୟା ମଧ ତାଙ୍କ ମୁଣ୍ଡରେ ଖେଳୁନି । ମାଲିକର ଯାଉଛି । ଜନତା ଦେବେ ତା'ର ଖର୍ଚ୍ଚ । ସେହି ଶବ୍ଦ ଶୁଣି ଅଚାନକ ଯାତ୍ରୀଟିଏ ଆସିଲେ ବସିପଡ଼ିବ ଦୌଡ଼ିଯାଇ ବସଟା ଛାଡୁଛି ଭାବି । ଅଥଚ କେତେ ଅସହାୟ ଭାବେ ସେ ଠକିଯିବ ସିନା । ଠିକ୍ ତା'ରି ପରି । ସେ ପ୍ରକୃତରେ ଭୁବନେଶ୍ୱରରୁ ବାହାରିଲା ସାଢ଼େ ଛ'ଟାରେ । ତାକୁ ଲାଗିଗଲାଣି ଦୁଇଘଣ୍ଟା ।

ଏମିତି ଘଡ଼ଘଡ଼ ଶବ୍ଦ କରି ବସଟି ଠିଆହୋଇଥିଲା ମାଷ୍ଟର କ୍ୟାଣ୍ଟିନ୍‌ରେ । ସେ ତା' ଉପରକୁ ଉଠିଯାଇଥିଲା । ବିଶେଷ ଲୋକ ନଥିଲେ । ସେ ସେହି ଅସହ୍ୟ ଶବ୍ଦରେ ଗାଡ଼ିଟିକୁ ଚାଲୁ ରଖିଥିଲା । ପାସେଞ୍ଜରଙ୍କୁ ଡାକୁଥିଲା । ସେ ଏତେ ତରବର ଥିଲା ଯେ ମନେହୋଇଥିଲା ସମୟଟା କ'ଣ ଏଇଠି ସ୍ଥିର ହୋଇଗଲା ? ତା' ମନରେ ଆଲୋକ ବର୍ଷର ଗତି । କେମିତି ପହଞ୍ଚିବ କଟକରେ । ନାଁ... ହେଲାନି ।

ବାଧ୍ୟ ହୋଇ ଚାଲି ଯାଉଥିବା ଗୋଟାଏ ଟାଉନ୍ ବସକୁ ସେ ଉଠିଥିଲା । ଉଦ୍ଦେଶ୍ୟ ଥିଲା ବାଣୀବିହାର ଛକରୁ କଟକ ବସ ଧରିଲେ ଶୀଘ୍ର ପହଞ୍ଚିବ । ଆଉ ଅସମ୍ଭବ ଭାବେ ଠକି ଯାଇଥିଲା । ବାୟାବାବା ମଠ ପାଖରେ ବସଟି ଅଚଳ ମହାମେରୁପରି ଠିଆ ହୋଇ ରହିଲା । ସେ ବହୁଥର ବସ ଉଠ ହେଲାପରେ କଣ୍ଡକ୍ଟରକୁ ରୁକ୍ଷଗଳାରେ କହିଲା-ବସଟା ଛାଡୁନା କାହିଁକି ? ସେ ଥିଲା ନିରୁତ୍ତର । ଉପେକ୍ଷା କରିଥିଲା ତା'ର ରୁକ୍ଷତାକୁ । ତା' ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ । କାରଣ ସେ ହିଁ ବସର ପ୍ରଭୁ । ସେ ଯାହା ଚାହିଁବ ତାହା ହେବ । କାହାର ପୁଣି ଏତେ ଆସ୍ପର୍ଦ୍ଧା । ତା'ର ଇଚ୍ଛା ଉପରେ କଥା କହିବ । ସେହି ପଡ଼ଉଠ ଭିତରେ ଭଙ୍ଗା ବସର ଲୁହାଖେଣ୍ଟାରେ ଲାଗି ତାର ଶାଢ଼ୀଟା ଚିରିଗଲା ଏବଂ ତା'ର ରାଗ ଅତିଶୟ ହେବାକୁ ଲାଗିଲା । ଅନ୍ୟମାନେ ସମସ୍ତେ ନୀରବହୋଇ ବସିଥିଲେ ଅବାକେଉଁ ରାତ୍ରିର ପ୍ଲାଟଫର୍ମରେ ଶୋଇଯାଇଛନ୍ତି । କଣ୍ଡକ୍ଟରଟି ଶେଷକୁ ବସରୁ ଓହ୍ଲେଇଯାଇ କଳି କରିବାକୁ ଲାଗିଲା । ସେମାନେ ଅସଭ୍ୟ ଭାଷାରେ ଶୋଧାଶୋଧି ହେଉଥିଲେ ବସିଥିବା ଲୋକଙ୍କ ସାମନାରେ । ଦୋ ଅକ୍ଷରିରେ । ଘନଘନ ଡ୍ରାଇଭରଟି ପଛକୁ ଚାହୁଁଥିଲା । କାହାକୁ ଅପେକ୍ଷା କରୁଥିଲା ନାଁ କ'ଣ ? ସେମିତି ତ କେହି ଆସିବାର ସେ ଦେଖୁନଥିଲା । ତା'ର ବାରବାର ଏଇ ଚାହିଁବା ତାକୁ ବଡ଼ ଆଲର୍ଜି ଲାଗୁଥିଲା ଏବଂ ତା'ର ମନର ବେଗ କେଉଁ ଆଲୋକବର୍ଷର ଗତିରେ ଧାଇଁଲାବେଳକୁ ସମୟର ଏଇଠି ଥମକି ଯିବା ବା ପୃଥିବୀ ତା'ର ଘୂର୍ଣ୍ଣନ ବନ୍ଦକରି ଦେବାପରି ଲାଗୁଥିବା ଅର୍ପିତାକୁ ଆଦୌ ସହ୍ୟ ହେଉନଥିଲା । ସେ ପୁନଶ୍ଚ ବ୍ୟାଗଟି ଧରି ତରବର ହୋଇ ବସ୍‌ରୁ ଓହ୍ଲେଇଥିଲା ଏବଂ ଚାଲିଚାଲି ଆସିଥିଲା ବାଣୀବିହାର ଛକଯାଏ ।

ସେଇଠି ସେ ଦେଖିଲା ପୂର୍ବର ବସଟି ଠିଆ ହୋଇଛି । କଣ୍ଡକ୍ଟରର ତୀର୍ଯ୍ୟକ ଚାହାଣୀ ତା'ଉପରେ । ସେ ଖୁବ୍ ନିରୁତ୍ତର ଏବଂ ଗମ୍ଭୀର । ହାରିଯିବାର ଯନ୍ତ୍ରଣା ତା'ର ପ୍ରତି ରକ୍ତକଣିକାରେ ଛୁଟାଛୁଟି କରୁଛି । ସେ ଖୁବ୍ ଟେନ୍‌ସନ୍ ଭୋଗୁଛି । ପ୍ରତିବାଦ କରିପାରୁନି । କଲେ ବି ମଣିଷଟାଏ ନାହିଁ ତାକୁ ସମର୍ଥନ କରି ଚିହିଁକି ପଡ଼ିବାକୁ । ଝାମ୍ପି ପଡ଼ିବାକୁ ଅନ୍ୟାୟ ଉପରେ । କଣ୍ଡକ୍ଟର ଡ୍ରାଇଭର ଉପରେ । ଏ ଜାତିର ରକ୍ତ କାହିଁକି ଏତେ ଶୀଥିଳ କେଜାଣି ? ଏତେ ବଡ଼ବଡ଼ ଲୋକ କେତେ ପ୍ରକାରରେ କହିଲେ- "ଉଠରେ ଉଠରେ ଉତ୍କଳ ସନ୍ତାନ ଉଠିବୁ ଆଉ ତୁ କେତେ ଦିନେ, ଉଠ କଙ୍କାଳ ଜାଗ ଦୁର୍ବଳ । ଆଉ କେଉଁ ଛଳରେ

କହିଥାନ୍ତେ ଯେ ଏମାନେ ଉଠି ଦୌଡ଼ିଥାନ୍ତେ ? ତଥାପି କାହିଁକି ଆତ୍ମସମ୍ମାନ, ଅନ୍ୟାୟ ବିରୁଦ୍ଧରେ ପ୍ରତିରୋଧ କରିବା ଟିକକ ଆସୁନି ! ସେ ଅଗତ୍ୟା ଚୁପ୍ ରହିଲା ଟାଉନ ବସର ସେହି ପରିସ୍ଥିତି ମନେପଡ଼ି । ଦୋ ଅକ୍ଷରିରେ ଶୋଧାଶୋଧି ହେଉଥିବା ଅବସ୍ଥାରେ ଜନସାଧାରଣ ପ୍ରତିରୋଧ ନକରି ବରଂ ଶୁଣୁଥିବା ଅବସ୍ଥାକୁ । ଲଜ୍ଜାରେ, ଘୃଣାରେ ତା' ଭିତର ଆଉଟିପାଉଟି ହୋଇଯାଇଥିଲା ଏବଂ ସେ ପଳାଇ ଆସିଥିଲା । ଯା ଭିତରେ କଟିଯାଇଥିଲା ଗୋଟାଏ ଘଣ୍ଟା । ଏବେ ଯେ ବସ୍‌ଟା ଛାଡ଼ିବ କି ଡେରିକରିବ ଜାଣିବାର ଉପାୟ ନାହିଁ । ସମସ୍ତେ ଯେମିତି ନିସ୍ତେଜ ପୁତୁଳା । ଆଉ ତା'ର ମଧ ଉପାୟେ ନାହିଁ ଚାଲିଚାଲି କଟକ ଯାଏ ଦୌଡ଼ିବ ।

ରସୁଲଗଡ଼ଠାରୁ ଆରମ୍ଭ ହୋଇଯାଇଥିଲା ସେହି ସବୁ ଦଦରା ଏକକ ରାସ୍ତା । ଖଣ୍ଡିଆ ଖାବରା । ଚାରିଟିକିଆ ରାସ୍ତା ତିଆରି ହେବ । ହେଲେ ଆରମ୍ଭ ହେଲେ ତ ! ହଁ...କିଛିଟା ଆରମ୍ଭ ହୋଇଛି । ସିନେମା ଟିକେଟ କାଟିଲାପରି କ୍ୟୁରେ ଠିଆ ହୋଇଛନ୍ତି ଟ୍ରକ, ବସ୍ । ରଥ ଚାଲିଲା ପରି ଟିକିଏ ଚାଲି ପୁଣି ରହୁଛନ୍ତି । ସମ୍ମୁଖରୁ ମଧ ଧାଡ଼ିଧାଡ଼ି ଗାଡ଼ି । ତା'ର ଧୈର୍ଯ୍ୟର ବଂଧ ଭାଂଗୁଛି । ଶୀତ ରାତିର ନିର୍ଜନତା ପଶିଆସୁଛି ଦୂର ଧାନକ୍ଷେତରୁ । ଦପ୍‌ଦପ୍ ହେଉଛି ଗୋଟାଏ ଉଜ୍ଜ୍ୱଳ ନକ୍ଷତ୍ର ବିରାଟ ଆକାଶ ଛାତିରେ । ଶୀତଳ ପବନ ଆସୁଛି । ଲୋକମାନଙ୍କ ମନରେ ଘରବାହୁଡ଼ା କ୍ଲାନ୍ତି । ସରସତା ନାହିଁ । ସମସ୍ତେ ଅବା ମୂ୍ୟହମାନ କେଉଁ ଅଜଣା ଦୁଃଖରେ । ସେ ବି ନୀରବ । ଛାତି ତଳର ଅଜଣା ଆଶଙ୍କାର ସ୍ପନ୍ଦନ । ଭାବିଲେ ହିଁ ସେ ତରଳି ଯାଉଛି । ଭୟ ପାଇ ଯାଉଛି । ଫାଙ୍କା ଦୃଷ୍ଟିରେ ଏଣେତେଣେ ଚାହୁଁଛି ସିନା, ହେଲେ ଲୁକ୍‌କାୟିତ ବ୍ୟଥା ଯେ କୋରିକୋରି ତାକୁ ହାଲିଆ କରିଦେଉଛି ତା' କିଏ ଜାଣେ ମଣିଷକୁ ଉପରୁ ଦେଖି । ଖାଲ ଖମାଣ ଡେଇଁ ବସଟି ଆଗଉଛି । ଦେଢ଼ଘଣ୍ଟାର କସରତ । ଭାବି ହେଉନି । ପଇଁଚାଳିଶ ମିନିଟ୍ ଜାଗାର ଆହୁରି ପଇଁଚାଳିଶ ମିନିଟ୍ ଅଧିକା ନେଲା । ବେଳେବେଳେ ଯାଠୁ ବି ଅଧିକା ଲାଗୁଛି ।

ଗେଟ୍ ପାଖରେ ପଂହଚି ସେ ଚାରିଆଡ଼କୁ ଚାହିଁଲା । ରିକ୍‌ସାବାଲା କେହି ଦେଖା ନଥିଲେ । କଟକ ସହରରେ ଏ ଅବସ୍ଥା ! ରାତି ସାଢ଼େ ଆଠରେ ରିକ୍‌ସା ମିଳୁନି । ଏ ସହର ଏମିତି ଚୁପ୍ ହୋଇପଡ଼ିଲେ ତାକୁ ଅଜବ ଲାଗେ । ପିଲାଦିନୁ ସେ ଏଠି ଆତଯାତ । ରାତି ବାରଟାଯାଏ ମଧ ଚଂଚଳ ଥାଏ ସହର । ଅଥଚ ଆଜିକାଲି କ'ଣ ହେଲା ଏ ସହରର ? କାଳିଆଙ୍କ ଉତ୍ପାତ ଯୋଗୁ ନାଁ ଆଉ କିଛି ? ଗୋଟାଏ

ରିକ୍ସାବାଲା ବେଦମରେ ଛୁଟୁଥିଲା । ସେ ଡାକିଲା ପ୍ରାୟ ଦୌଡ଼ିବା ଅବସ୍ଥାରେ ।ସେ ହାତ ଉଠାଇ ନାହିଁ ନାହିଁର ଇଂଗୀତ ଦେଇ ପଳାଇଲା ।

ଅଂଧାର ଭିତରେ କେଉଁଠି ବସିଥିଲା ବୃଦ୍ଧ ରିକ୍ସାବାଲାଟାଏ । ତା'ର ବ୍ୟସ୍ତତା ଦେଖି ଚାଲିଆସିଲା । ବିନା ବାକ୍ୟବ୍ୟୟରେ ଠିଆ କରାଇଦେଲା ରିକ୍ସା । ପିନ୍ଧିଛି ଖାକି ରଂଗର ହାଫ୍ ପ୍ୟାଣ୍ଟ, ସାର୍ଟ । ତା'ର କଳା ମଚମଚ ଶରୀର ସାଂଗକୁ ଖୁଣ୍ଟା ଖୁଣ୍ଟା ପାକଲା ଦାଢ଼ି । ମୁହଁ ଫୁଲିଲା ଫୁଲିଲା । ପାଦ ମଧ୍ୟ ଫୁଲିଛି । ଚନ୍ଦା ମୁଣ୍ଡ । ତା'ର ଏ ପ୍ରକାର ଅବସ୍ଥାରେ ଆଦୌ ରିକ୍ସାରେ ଉଠିବାକୁ ଇଚ୍ଛାନଥିଲା ଅର୍ପିତାର । ଆଉ ସେହି ଅନିଚ୍ଛା ହେଉ ପଛେ ଲୁକ୍କାୟିତ, ସେ କ'ଣ ବାଦ୍ ପଡ଼ିଥିବ ବୁଢ଼ାଟି ଆଖିରୁ ? ସେ ବୋଧହୁଏ ନିଜ ପାଖରେ ନିଜେ ଧରାପଡ଼ି ଯାଇଥିଲା । ତା'ର ଦାରିଦ୍ର୍ୟ, ଅସହାୟ ଅବସ୍ଥା ପ୍ରତି ତା'ର ହୀନମନ୍ୟତା, ବେପରୁଆ ଭାବ ତା' ସ୍ପଷ୍ଟ ହୋଇ ଉଠୁଥିଲା । କାହିଁକି ଏ ବୟସରେ ବିଶ୍ରାମ ନନେଇ ଏତେ ଶୀତରେ ଲୋକଟି ଖଟୁଛି, ସେଥିପାଇଁ ବିରକ୍ତ ହୋଇପଡ଼ିଥିଲା । କ'ଣ ପୁଅପାଠି ନାହାନ୍ତି ? ଥିଲେ ବି କ'ଣ ପଚାରୁ ନାହାନ୍ତି କି ? ବୁଢ଼ୀଟି ଯଦିଥିବ ଆଉ ଅଲଗା ରହୁଥିବ, ସେଥିପାଇଁ କ'ଣ ତା'ର ଏ ଜୀବନ ସଂଘର୍ଷ ? ସେ ତାକୁ ବିରକ୍ତି, କ୍ରୋଧ, ହୀନମନ୍ୟତା ପ୍ରକାଶ କରିବ କ'ଣ, ଆପଣା ଭିତରୁ ଦଲକାଏ ଧସି ପଡ଼ିଲା କୂଳଖାଉଥିବା ନଦୀପରି । ତା' ଶୁଣିପାରିଲା ନିଜ ଭିତରେ । ତା' ହେଲେ ବାପା .... ତା' ବାପା କାହିଁକି ଖଟୁଛନ୍ତି ? କାହିଁକି ? କାହିଁକି ଶବ୍ଦଟା ଯେପରି ବଜ୍ର ନିନାଦପରି କାନରେ ପଡ଼ିଲା । ଏବଂ ତା' ଆଖିରୁ ଦୁଃଖ, ଅନୁତାପ ଅନୁଶୋଚନାର ଲୁହ ଫସକିନି ବାହାରି ଆସିଲା । ସେ କିଛି ନକହି ଚୁପ୍‌ଚାପ୍ ବସି ପଡ଼ିଲା ରିକ୍ସାଟି ଉପରେ । ବୁଢ଼ାଟି ଟାଣି ପାରୁନଥିଲା ରିକ୍ସା । ବିନାବାକ୍ୟବ୍ୟୟରେ ରିକ୍ସାଟି ଚଳେଇବାକୁ ଲାଗିଲା ଏବଂ ଫୁଲିଲା ଫୁଲିଲା ଗୋଡ଼ ଦୁଇଟି ବଡ଼ କରୁଣ ଦିଶୁଥିଲା । ସେ ତା'ର ଗତିପଥ ଜାଣିଥିଲା କି କ'ଣ କିଛି ନପଚାରି ଠିଆ କରାଇଦେଲା ଘର ସାମ୍ନାରେ । ସେ ତିନିଟଂକା ବାହାରକରି ତାକୁ ଦେଲା । ଏବଂ ସେ ତଳକୁ ମୁହଁପୋତି ଚାଲିଗଲା ତା' ବାଟରେ । କେଜାଣି କାହିଁକି ଅର୍ପିତା ଥମ ହୋଇ ଠିଆ ହୋଇଗଲା ଏବଂ ଅସହାୟ ହୋଇ ଚାହିଁ ରହିଲା ତା'ର ଯିବାବାଟକୁ । ମନେହେଲା ଲୋକଟା ଏଇ ସାହିର ଛକଉପରେ ସବୁବେଳେ ରିକ୍ସା ରଖି ବସିଥାଏ । ସେଥିପାଇଁ ତାକୁ ଚିହ୍ନିଛି ।

ସେ ରିକ୍ସାବାଲାର ଅସହାୟ ଜଗତରେ ଏଯାଏ ମଗ୍ନ ଥିଲା । ଏବେ ମୁହଁ ବୁଲାଇଲା ଘରଆଡ଼େ । ତରିତରି ଗୋଡ଼ ପକାଉଥିଲା ତା' ଘରଆଡ଼େ ଲମ୍ବିଥିବା ଗଳିରେ ।

ଗଳିରେ ପାଦ ଦେବାମାତ୍ରେ ମନେହେଲା ପାଦ ତା'ର ଅବଶ ହୋଇଯାଉଛି । ଆଗରେ ଶୋଇଛି ନିଦୁଆ କୁକୁର । ସେ ଯାଇ ପଂହଚିଲା ଗେଟ୍ ସାମନାରେ । ବାହାରେ ଠିଆ ହୋଇଥିଲେ ଭାଉଜ । ଗାଁରୁ ଆସିଥିଲେ । ପିଂଧିଥିଲେ ମଇଳା ମୋଟା ରଗଡ଼ା ସମ୍ବଲପୁରୀ ଶାଢ଼ି । ଫିକା ରଂଗ । କେତେଥର ସାଂଗ ମିନୁ କହିଛି । ଏମିତି ନ ପିଂଧିବାକୁ । ହେଲେ ମନ ତାଙ୍କର । ଡିସିସନ ବି ତାଙ୍କର । କାହା କଥା ରଖିବେନି । ସାଂଗମାନେ ଆଜି କିଏ କେଉଁଠି ରହିଲେଣି । ସମୟ ଗଡ଼ି ଗଲାଣି ଅନେକ ଅନେକ ରାସ୍ତା । କୁସୁମିତ ସେମାନଙ୍କ ରାସ୍ତାରେ ଆନନ୍ଦର, ସୁଖର ସ୍ରୋତସ୍ୱିନୀ । ଛଳଛଳ, କଳକଳ । ଅଥଚ ସେ ? ବଡ଼ ଦୁଃଖଦ ସାରାଂଶର ଏହି ନିତିପ୍ରତି ସମସ୍ୟାକୁ ମୁଣ୍ଡେଇ ହିମାଳୟର ବଂଧୁର ପଥ ଅତିକ୍ରମ କଲାପରି ଚାଲିଛି । ଏଇ ବଂଧୁର ପଥ ଅତିକ୍ରମକରି ସେ କେମିତି ପ୍ରାଣର ସ୍ରୋତରେ ସ୍ପନ୍ଦିତ, ଭାବର ଆବେଗରେ ଛଳଛଳ, ଚିନ୍ତନରେ ଉଦ୍‌ଗ୍ରୀବତା ଧରି ଚାଲିଛି ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଯେଉଁଠି ଧ୍ୱଂସ ହିଁ ଅନିବାର୍ଯ୍ୟ, ତା'ର ନିୟତି, ସେଠି ସେ କେତେ ଗତିଶୀଳ ।

ସେ ବ୍ୟାଗପତ୍ର ଏକ ରକମ ଫୋପାଡ଼ିଲାପରି ଗୋଟାଏ ଜାଗାରେ ରଖିଲା । ଭାଉଜ ତା' ମୁହଁକୁ ଚାହିଁଲେ । ମୂକ ଯେମିତି । ସବୁ ଚିନ୍ତା, ଭାବନା ତାଙ୍କ ଆଖିରେ ସ୍ଥାଣୁ ହୋଇଯାଇଛି ।

ସେ ଗୋଡ଼ ଧୋଇବା ଭୁଲି ଯାଇଥିଲା । ନଥକିନି ବସି ପଡ଼ିଲା ସୋଫା ଉପରେ । ଶୀତଳ ତା'ର କଣ୍ଠ । ଶରୀରର କୋଷ ଯେମିତି ଜଡ଼ ହୋଇ ଯିବ । ସେ ସେମିତି ତଳକୁ ମୁହଁକରି ବସି ରହିଲା ଆଉ ପଚାରିଲା ଘରେ କେହି ନାହାନ୍ତି ? ବୋଉ କାହିଁ ? ବାପା କାହିଁକି ଫେରି ନାହାନ୍ତି ?

– ମୁଁ ତ ଜାଣିନି । ବୋଉ ଗାଁକୁ ଯାଇଛନ୍ତି ।

– ସୌମ୍ୟ ?

ସେ ନୀରବ ରହିଲେ । ସେହି ବୋକାବୋକା ଦୃଷ୍ଟି ତାଙ୍କର ସବୁବେଳେ । କିଛି ଜାଣୁ ନାହାନ୍ତି । ଗୋଟାଏ ଫୋନ୍‌କଲ୍‌ପାଇ ସେ ଅଂଧାରରେ ସଂଘର୍ଷକରି ଦୌଡୁଛି, ଏଠି ଘରେ ଥାଇ ସେ କିଛି ଜାଣୁ ନାହାନ୍ତି ।

ଶୀତାର୍ତ୍ତ ରାତି ଯେମିତି କେଉଁ କରୁଣ ଆର୍ତ୍ତନାଦରେ ତାକୁ ଡାକୁଥିଲା । ଘରୁବାହାରିଆସି ସେ ଠିଆ ହେଲା ପାଚେରୀକୁ ଆଉଜି । ଶୀତଟା ଖୁବ୍ ଜୋର ପଡ଼ିଛି ଏ ବର୍ଷ । ଡିସେମ୍ବରର ଶେଷ ଭାଗଟା ଯଦିଓ ଶୀତ ହୁଏ ତଥାପି ଆଜି ଯେପରି ମଂଜଥରା ଶୀତପରି ଅନୁଭବ ହେଲା । ସେ ପୁନଶ୍ଚ ଛୋଟ ଗଳିର ମୁହଁଯାଏ ଆସିଲା ଏବଂ ମୁଖ୍ୟ ରାସ୍ତାକୁ ଚାହିଁଲା । କୁହୁଡ଼ି ପଡ଼ିବା ଆରମ୍ଭ କରିଥିଲା । ଅନ୍ଧାର ଘନହେଉଥିଲା । ଷ୍ଟ୍ରିଟ ଲାଇଟ ଗୁଡ଼ିକ ବଡ଼ ନିଃଷ୍ପ୍ରଭ ହୋଇ ଜଳୁଥିଲେ । ଦୂରରେ ଗୋଟାଏ ବଲବ୍ ଜଳୁନଥିଲା । କେଇଟା ଅସ୍ପଷ୍ଟ ମୁହଁ ଆଗେଇ ଆସୁଥିବାର ଦେଖାଗଲା । ନାଁ... ବାପା କାହିଁକି ଚାଲିଚାଲି ଆସିବେ ? କେଇଟା ସାଇକେଲ ବାଲା ଅତିକ୍ରମ କଲେ । ବାପା ସାଇକେଲ ଚଲାନ୍ତି । ବଡ଼ ଫୁର୍ତ୍ତି ଲୋକ । ହେଲେ ସତୁରି ବର୍ଷରେ କ'ଣ ସାଇକେଲ ଚଲାଇବାର ଦୃଷ୍ଟିଶକ୍ତି ଅଛି ! ଅଳ୍ପ କାଟ୍ରାକ୍ଟ ଧରିଛି । ତା'ର ମନେପଡ଼ିଗଲା ସେ ସାଇକେଲ ଚଲାଇ ଯା'ନ୍ତି । ତେଣୁ ଫେରୁଥିବେ ସାଇକେଲ୍‌ରେ । ମୁହଁଗୁଡ଼ିକ ପାଖେଇ ଆସିଲା ଏବଂ ତା' ସାମନା ଦେଇ ଚାଲିଗଲା । ସେ ଟିକିଏ ଉତ୍ସୁକ ହୋଇ ନିରୀକ୍ଷଣ କଲା । ସତେ କି ତା' ବାପାଙ୍କୁ ଚିହ୍ନି ପାରୁନି । ବଡ଼ ଅଜବ ଲାଗିଲା ନିଜକୁ । ସତେ ତ ସେ ଯେମିତି ଆଜି ନିଜକୁ ଚିହ୍ନି ପାରୁନି । ସବୁ ଭୁଲିଯାଇଛି କେଉଁ ଅଜଣା ଆଶଙ୍କାରେ । ସେ ପୁନଶ୍ଚ ମୁହଁ ତଳକୁ କଲା ଏବଂ ତା' ଛାତି ଭିତରୁ ଗୋଟାଏ ହା...ହା... କାର ଉଠି ଆସିଲା । ସେ ଦେଖିଲା ସମସ୍ତେ ଘର ଅଭିମୁଖୀ । ଅଥଚ ତା' ବାପା ଫେରୁନାହାନ୍ତି । ବାପା...ବାପା ବୋଲି ସେ ଚିତ୍କାର କରିବାକୁ ଇଚ୍ଛା କଲା । ଦେଖିଲା ତା'ର ଅନ୍ତର ଭିତରେ ସେ ଚିତ୍କାର କେଉଁ ଅନାଦିଯୁଗରୁ ବହି ଆସି ମିଳେଇ ଯାଉଛି । ସୌମ୍ୟ ଫୋନ୍ କରିଥିଲା- ଶୀଘ୍ର ଘରକୁ ଆସ । ବାପା ଫେରି ନାହାନ୍ତି । ସେ ସେଇଥିରେ ବିଚଳିତ ହୋଇ ପଳାଇ ଆସିଛି । ଏବେ ସେ ଯିବ କୁଆଡ଼େ ? ରାତି ଦଶଟା ବାଜିବାକୁ ଯାଉଛି । ସେ ପଡ଼ିଶା ଘରକୁ ଯାଇ ଫୋନ୍ କରିବକି ନାହିଁ ଭାବିଲା । ସ୍ତ୍ରୀ ଲୋକଜଣଙ୍କର ତୀବ୍ର ଭାଷା । ଯଦି ବିରକ୍ତି ହୋଇ ପଡ଼ନ୍ତି, ତାକୁ ଭଲ ଲାଗିବ ନାହିଁ । ସେ ଦ୍ୱନ୍ଦରେ ପଡ଼ିଲା । ଠିଆ ହୋଇ ରହିଲା ଗଳିର ମୁହଁରେ ।

ଦେଖିଲା ଆଉ କେତେଜଣ ଲୋକ ଆଗେଇ ଆସୁଛନ୍ତି ତାଙ୍କ ଗଳିଆଡ଼େ । ସେ କ'ଣ ବାପା ? ସେମାନେ ନୀରବରେ ଆସୁଥିଲେ । ମନେହେଲା ବାପା ଆସୁଛନ୍ତି । ପରିଚିତ ଗଳିରେ ତାଙ୍କ ପାଦ ଆପେ ଆପେ ପଡୁଛି । ସେ ପଚାରୁଛନ୍ତି- ମା' ତୁ ଏତେ ରାତିରେ କାହିଁକି ଠିଆ ହୋଇଛୁ ? ମୁଁ ବୁଢ଼ାଲୋକଟାଏ, କ'ଣ ହଜି ଯାଉଛି । ଆ...ମା...ଆ । ଘରକୁ ଆ'... ।

ଗଲାବେଳେ ସୁଇଟର ପିନ୍ଧିଥିଲେ କି ନାହିଁ କିଏ ଜାଣେ ? ବୋଉ ଘରେ ନାହିଁ । ଭାଉଜ ଅଦୂରଦୃଷ୍ଟ । ଖାଇ ଶୋଇପଡ଼ିଲେ ସମୟ ଯାଏ । ସେ କ'ଣ ଆଉ ସୁଇଟର ସାଙ୍ଗରେ ନେବାକୁ କହିଥିବେ ? ଏ ହାଡ଼ଭଙ୍ଗା ଶୀତରେ କେମିତି ଥିବେ ସେ ? କେମିତି ଆସିବେ ? ଲୋକ ଦୁଇଜଣ ପାଖେଇ ଆସିଲେ । ଦୂରରୁ ତାଙ୍କର ଉଚ୍ଚତା, ଦେହର ଗଠନ ଦିଶୁଥିଲା ବାପାଙ୍କ ପରି । ନାଁ...ତା' ଆଖିକୁ ସବୁ ଭୁଲ ଦେଖାଯାଉଛି କାହିଁକି ଆଜି ! ଦୂରରୁ ସମସ୍ତେ ବାପାପରି ଅଥଚ ପାଖକୁ ଆସିଲେ ବାପା ନୁହଁନ୍ତି !

ସେ ଅଗତ୍ୟା ପଡ଼ିଶାଘରକୁ ଗଲା । କବାଟ ଖଟ୍‌ଖଟ୍ କଲା । ଭିତରୁ ବାହାରି ଆସିଲା କଲେଜରେ ପଢୁଥିବା ଝିଅଟି । ପ୍ରଶ୍ନିଳ ଆଖିରେ ତାକୁ ଚାହିଁଲା । ବୋଧହୁଏ ଭାବୁଥିଲା ଏତେ .ରାତିରେ କାହିଁକି ଆସିଛି ସେ । କେବେ ତ ସେ ଯାଏନି ତାଙ୍କ ଘରକୁ । ସେ ସାମାନ୍ୟ ହସି କହିଲା-ଟିକେ ଫୋନ୍ କରିଥାନ୍ତି । ଝିଅଟିର ମା' ବୋଧହୁଏ ନଥିଲେ । ଝିଅଟି ଫୋନ୍ ରହିଥିବା ଜାଗା ଦେଖାଇ ଦେଇଥିଲା । ସେ ଡାଏଲ ଘୂରାଇଲା । ବଡ଼ ପାଟିରେ କିଛି ପଚାରି ପାରିବନି । ହୁଏତ କେହି ଶୁଣି ତାକୁ ଚାହିଁବେ ସନ୍ଦେହୀ ଆଖିରେ ।

ସେପଟେ ଫୋନ୍ ରିଂ ହେଉଛି । ବହୁକ୍ଷଣପରେ ଗୋଟାଏ କଦର୍ଯ୍ୟ କୁଣ୍ଠିତ କଣ୍ଠ । ଟଳ...ଟଳ...ସ୍ୱର ହାଲୋ । 'ମୁଁ ଆଦିତ୍ୟ ବାବୁଙ୍କ ଝିଅ କହୁଛି । ବାପା ଏ ଯାଏ ଘରକୁ ଫେରିନାହାନ୍ତି ।'

-ଖରାବେଳଠୁ ତାଙ୍କୁ ପୁଲିସ୍ ଡାକି ନେଇଛି । ଧଡ଼ କରି ଫୋନ୍ ରଖିବାର ଶବ୍ଦ ।

ପୁଲିସ ! ସେ ମନେ ମନେ ଉଚ୍ଚାରଣ କଲା । ପୁଲିସ୍ କ'ଣ ପାଇଁ ତାଙ୍କ ପରି ନିରୀହ ଲୋକଙ୍କୁ ଡାକିନେଲା ? ତା'ହେଲେ ଏଇ ବାଗ୍ରୀର କିଛି କାରସାଦି ରହିଛି କି ? ସେ କିଛି ଠଉରେଇ ପାରିଲାନି, ଆଗରୁ ମନା କରିଥିଲେ ସେଠିକୁ ଯିବାକୁ । ଏ ବୟସରେ ମାରୱାଡ଼ି ପାଖରେ ଖଟି ସମ୍ମାନ ନଷ୍ଟ ନ କରିବାକୁ । ଅଥଚ କିଏ ତାକୁ ଶୁଣେ ନାଁ ବୁଝେ ?

ସେ ବିଷାଦର ଭାର ସହିପାରୁନଥିଲା । ଟେନ୍‌ସନ୍‌ର ଭାର ମଧ୍ୟ ସହିପାରୁନଥିଲା । ତା' ଭିତରୁ ଗୋଟାଏ ଆକୁଳ ଆର୍ତ୍ତନାଦ ଉଠି ଆସୁଥିଲା । ଅବା ଦୋହଲାଇ ଦେବ ସମଗ୍ର ସହରର ହୃତସ୍ପନ୍ଦନକୁ ।

ଭାଉଜ ଆସି ଠିଆହେଲେ ଗେଟ୍ ସାମ୍‌ନାରେ । ଡାକିଲେ ନିମ୍ନ କଣ୍ଠରେ । ଅର୍ପିତା...ଘରକୁ ଆସ । ମୁଣ୍ଡରେ କାକର ପଡ଼ିବ । ଥଣ୍ଡା ଦେହ ତୁମର । ସେ ଭାଉଜଙ୍କୁ ଉତ୍ତର ଦେଲାନି । ନିର୍ଲିପ୍ତରେ ଚାହିଁଲା ଦୂରକୁ । ଖୋଜିବା ଖୋଜିବା ଆଖିରେ । ମଣିଷ ମାନଙ୍କ ଯିବା ଆସିବା କମି ଯାଇଥିଲା । ଦୋକାନୀମାନେ ଛକ ଉପରୁ ତାଲାଦେଇ ଦୋକାନ ବନ୍ଦକରି ଫେରି ସାରିଥିଲେ । କାଠଯୋଡ଼ି ବଂଧ ଉପରୁ କେତେଟା ବାଲିବୁହା ଟ୍ରକର ଭାରି ଶବ୍ଦ ନିଃଶବ୍ଦତାକୁ ଭାଂଗି ଦେଉଥିଲା । ଚୌଦ୍ୱାର ପେପର ମିଲ୍‌ର ଗଂଧ ତା' ନାକରେ ବାଜୁଥିଲା । ସାରା ସହର ଶୂନ୍‌ଶାନ୍ । ଆକାଶରେ ଆସିଲାଣି କୃଷ୍ଣ ପକ୍ଷର ଚାନ୍ଦ । ଝକମକ କରୁଛି କେତେଟା ଦୂର ଆକାଶର ନକ୍ଷତ୍ର । କଟକ ସହରର ଗଳି । ରାତି ବଢ଼ିଲେ ଏଠି ବୁଲା କୁକୁରଙ୍କ ଦୌରାତ୍ମ୍ୟ । ଚାରି/ଛ'ଟା ଶୋଇଥିଲେ । କ'ଣ ଗୋଟାଏ ଶବ୍ଦରେ ସେମାନେ ଭୁକି ଉଠିଲେ ଏକା ସ୍ୱରରେ । ସତେ କି ସାରାଟା ସହରର କୁକୁରମାନେ ଏକ ତାଳରେ ବୋବେଇ ଉଠିଲେ । ସେ ଘରକୁ ଫେରିଲା । ଅଚଳ ହୋଇ ବସି ରହିଲା ସୋଫା ଉପରେ । କେତେବେଳେ ଆସିବେ ବାପା ? କୁଆଡ଼େ ଗଲା ସୌମ୍ୟ ?



# (୧୨)

ଗୋଟାଏ ଜୀବନରେ କ'ଣ ସଂଘର୍ଷର ଶେଷ ହୁଏ ନାହିଁ ! ଏମିତି ହୋଇନଥାନ୍ତା ସବୁ ପୁଅ ଝିଅ ମିଶି ତାଙ୍କୁ ବହୁତ ପଇସା ଦେଇ ପାରିଥାନ୍ତେ ଆଉ ସେ ନିର୍ଦ୍ଵନ୍ଦରେ ଘର ଚଳାଇ ପାରନ୍ତେ ! ଖୁସୀରେ ହସିହସି ଜୀବନ ବିତାଇ ପାରିଥାନ୍ତେ ? କେତେ କର୍ମଠ, ସିନିସିଅର୍, ପରିଚ୍ଛନ୍ନ ମଣିଷ ଜଣେ ! ଅଥଚ କେମିତି ମଲା ବାଲୁଚର ପରି ହୋଇଗଲେ ଦିନକୁ ଦିନ । ଏତେ ସଂଘର୍ଷ କି ମଣିଷ କରିପାରେ ! ତା'ର ହୃତପିଣ୍ଡ ଦୋହଲି ଯାଏ ନି ? କମ୍ପନ ବଢ଼ିଯାଏ ନି ? କେମିତି ସହିଲେ ସେ ଏତେବର୍ଷର ପୀଡ଼ନ ? ଏକ ପ୍ରକାର ନିର୍ଯ୍ୟାତନା ? କ'ଣ ଥିଲା ତାଙ୍କର ଦୋଷ ? କାହିଁକି ପଇସା ପାଇଁ, ଘର ଚଳାଇବା ପାଇଁ ତାଙ୍କ ଆଖିରୁ ଲୁହ ବୋହିବ ? କି ଅସହାୟତା ଥିଲା ସେହି ଅଶ୍ରୁ ପଛରେ ଯେ ପୁରୁଷ ମଣିଷଟିଏ, ପୁଣି ସତୁରିବର୍ଷ ବୟସରେ ତାଙ୍କ ଆଖିରୁ ଝରଝର ଲୁହ ବହିବ ।

ବାଣୀବ୍ରତାଙ୍କର ବୁଝାଇବାର ଶକ୍ତି ଭିତରେ ବାସ୍ତବତାରୁ ଭାବପ୍ରବଣତା ବେଶୀ । ''ଓହୋଃ ! ବୁଢ଼ାଟିଏ ହେଲଣି ଲୁହ ଢାଳୁଛ ? କ'ଣ ନାହିଁ ତୁମର ? ଆଉ କ'ଣ ଥାନ୍ତା ବା ଆମର ? ମୋ ପିଲାମାନେ ମୋର ସବୁକିଛି । ତୁମପରି ମୁଁ ଏତେ ପଇସା ପଇସା ହେଉନି୍ ।''

- ତୁମେ ଘର ଚଳାଉଥିଲେ ଜାଣିଥାନ୍ତ । ରାତି ପାହିଲେ ମୁଁ ଦୌଡୁଥିବି ସାହୁ ଦୋକାନକୁ । ଅଟା ଆଣ, ତେଲ ଆଣ, ଲୁଣ ଆଣ । ଜାଣିଛ ତା'ର ଖାତାରେ ଦୁଇ ହଜାର ଟଂକା ବାକି ହେଲାଣି । କେତେ ଥର ସେ ମୁହଁ ଖୋଲି କହିଲାଣି । ଆର ମାସଠୁ ବାକି ଦେବା ବନ୍ଦ । କ'ଣ ନାହିଁ କ'ଣ ଲେଖୁଛି ଦାମ କିଏ ଜାଣେ ? ବାକିରେ ଆଣିଲେ ଆହୁରି ଠକିବା କଥା ।

ବାଣୀବ୍ରତା ଏସବୁ ଶୁଣି ମଧ୍ୟ ଗୁରୁତ୍ୱ ଦିଅନ୍ତି ନାହିଁ । ''ତୁମ ଘର ଚଳାଇବା କ'ଣ ବଡ଼କଥା'', କହି ଚାଲିଯାନ୍ତି ଜଗନ୍ନାଥ ମନ୍ଦିର । ଆଧ୍ୟାତ୍ମିକତାର ବଳୟ ଭିତରେ ମନପ୍ରାଣ ତାଙ୍କର ଅଳାଡ଼ି ଦେଇଥାନ୍ତି । ମନକୁ ବୁଝାଇ ପ୍ରଫୁଲ୍ଲ ରଖିବାର ଚେଷ୍ଟା କରନ୍ତି । ହେଲେ ଘରର ମୂରବୀ ଯିଏ ସିଏ ବୁଝେ  ଘର ଚଳାଇବାର କଷ୍ଟ ।

ଏମିତି କି ଆଦିତ୍ୟ ବେଳେବେଳେ ଔଷଧ ଛାଡ଼ି ଦିଅନ୍ତି । ଜୋରଦେଇ ପଚାରିଲେ କଥାଟା ମାନନ୍ତି । କୁହନ୍ତି ପଇସା କାହିଁ ? ସାହୁ ଦୋକାନରେ ବାକି । ଇଲେକ୍ଟ୍ରିକ ବିଲ୍, ପେପରବିଲ୍, କ୍ଷୀରବାଲା ପଇସା, ଗାଁକୁ ପୁଣି କିଛି ଦେବି । ହେଲାଣି ସତୁରି ବର୍ଷ । ଯାହା ହେବ ହେବ ।

ମଣିଷ ଚାରିଦୌଡ଼ି କଟାହେଲେ ଏମିତି ସିନା ଅସହାୟ ପଣିଆକୁ ଅନୁଭବେ ? ସେ କ'ଣ ଖାଲି ଏଇ ଅଭାବ ବୋଧ ? ଔଷଧ ଛାଡ଼ିଦେବା କଥା ଶୁଣି ଅର୍ପିତା ଚମକି ପଡ଼େ । ହାର୍ଟ ଯାହାର କମଜୋର୍, ଉଚ୍ଚ ରକ୍ତ ଚାପ, ସେ ପୁଣି ଔଷଧ ଛାଡ଼ିଦେଇପାର ? ଏତେ ଦୁଃସାହାସୀ ଜଣେ କେମିତି ହୋଇପାରେ ? କେଉଁ ପ୍ରକାର ମାନସିକତାର, ହତୋତ୍ସାହର ଶିକାର ହେଲେ ଜଣେ ଜୀବନକୁ ପରଓ୍ୱା କରେନା । ଆଜି ଯଦି ବ୍ରେନ ହାମରେଜ ହୋଇଯିବ ? ହାର୍ଟ ଫେଲ୍ୟୁଅର ହୋଇଯିବ ? ସେ କଥା ଆଉ ଆଗକୁ ଭାବିପାରେନା ଅର୍ପିତା । କି ଦାୟିତ୍ୱହୀନ, ଅଜବ ଲୋକ ତ ? ନାଁ... ସେ ତ ଦାୟିତ୍ୱବାନ । କେବଳ ଅର୍ଥାଭାବର ଏଇ ନିରାଶାବୋଧରୁ ଏମିତି ହୋଇଯାଉଛନ୍ତି । ମାସକେ ଥରେ ବ୍ଲଡ ପ୍ରେସର ଚେକ୍ ଅପ୍ କରିବା କଥା କରନ୍ତି ନାହିଁ । ଦୀର୍ଘ ଦିନପରେ ଡାକ୍ତର ପାଖକୁ ଯାଇଥିଲେ । ପଡ଼ିଶା ଘର । ଖୁବ୍ ବ୍ୟତିବ୍ୟସ୍ତ ହୋଇଉଠିଲେ । କହିଲେ ଏଇ ସାମନ୍ନାରେ ଥାଇ ଏତେ ଅବହେଳା କରୁଛନ୍ତି ଚେକଅପରେ । ଏବେ ପ୍ରେସର ୧୮୦/୧୦୦ ଚାଲିଲାଣି । ଅର୍ପିତା ସାଂଗରେ ଥିଲା । କହିଥିଲା ତୁମେ ପ୍ରତିମାସରେ ଚେକ୍ଅପ୍ ହୋଇଯିବ । ମୁଁ ପଇସା ଦେଇଦେବି । ଇ:ସି:ଜି: ଖର୍ଚ୍ଚ ଏମିତି କେତେ ହେବ ? ଡାକ୍ତରଙ୍କ ତାଗିଦାଯୋଗୁ ଦିନାକେତେ ବି:ପି ମାପିବାକୁ ଯାଇଥିଲେ । ଦୁଇଥର ଯିବା ପରେ ଡାକ୍ତର କହିଲା- ପଇସା ପଡ଼ିବ । ସେ ତତ୍କ୍ଷଣାତ୍ କହିଥିଲେ-ହଁ ପଇସା ଅଛି ନେଉ ନାହାନ୍ତି । ଏମିତି ଗୋଟାଏ ଅପମାନ ସୂଚକ କଥା କହିଲାବେଳେ କେମିତି ହୋଇ ଯାଇଥିବ ତାଙ୍କର ମୁହଁ । କେମିତି ଛୋଟ ହୋଇଯାଇଥିବେ ସେ ? କେମିତି ଆତ୍ମମର୍ଯ୍ୟାଦା ଭୁଲୁଣ୍ଠିତ ହୋଇଥିବ । କି ଦହନଟିଏ ଭିତରେ ଜଳିଉଠି ଲିଭିଯାଇଥିବ ଉଲ୍କା ପରି ? ଯାହାର ଅସ୍ତିତ୍ୱ ମହାଶୂନ୍ୟରେ ମିଳେଇଗଲା ପରି ମିଳେଇଯାଇଥିବ ତାଙ୍କ ଛାତି ତଳେ । ଅଥଚ ସେ ସହିଯାଇଥିବେ ଅପମାନ, ଏଇ ଅସମ୍ମାନକୁ । ପଇସା ନଥିଲେ ମଣିଷର ଆତ୍ମମର୍ଯ୍ୟାଦାର ଯେଉଁ କ୍ଷୟ ସେ ହିଁ ବୁଝେ । ଏକଥା ଶୁଣି କାନମୁଣ୍ଡା ଝାଁ...ଝାଁ କରିଥିଲା ଅର୍ପିତାର । ଯଦି ତା'ବାପା ହୋଇଥାନ୍ତେ କ୍ଲାସ ଓ୍ୱାନ ଅଫିସର । ରଖିଥାନ୍ତେ ଲକ୍ଷ ଲକ୍ଷ ଟଂକା ବ୍ୟାଙ୍କ୍ ବାଲାନ୍ସ । ସମାଜରେ ଗୋଟାଏ ପଦବୀ

ଥା'ନ୍ତା । ତା' ହେଲେ କ'ଣ ଡାକ୍ତରଟା ଏମିତି ବ୍ୟବହାର କରିଥାନ୍ତା ? ଅଶିକ୍ଷିତ ମଣିଷଟିଏ ପରି ? ବୟସ୍କ ଲୋକଙ୍କୁ କେମିତି କଥା କୁହାଯାଏ, ସମ୍ମାନ ଦିଆଯାଏ, ତା' ଜାଣିନି । ପୁଣି ପଡ଼ୋଶୀ ହୋଇ ।

କ'ଣ ବା କରିବେ ସେ ! ପୁଅଝିଅ ରୋଜଗାରିଆ, ତଥାପି କେହି ନେଇପାରନ୍ତି ନାହିଁ ତାଙ୍କର ଅନାଟନ । ଅଭାବବୋଧ । ହରଣ କରିପାରନ୍ତି ନାହିଁ ଦୁଃଖ । ସବୁବେଳେ ସେ କାଂଗାଳର ଅନ୍ୟ ରୂପରେ ଛୋଟ ହୋଇଯା'ନ୍ତି । ଅଥଚ ନିର୍ବିକାର ଥାନ୍ତି । ମାନରେ, ଅପମାନରେ। ନୀରବିତ ମୁହୂର୍ତ୍ତରେ କ'ଣ ସବୁ ଭାବନ୍ତି । ଶୋଇ ପଡ଼ନ୍ତି । ନିଘା କରନ୍ତି ନାହିଁ ମୃତ୍ୟୁକୁ- ଅଭାବବୋଧର ଏଇ ଡିଣ୍ଡିମ ଯେଉଁଠି ତୀବ୍ର ଶବ୍ଦରେ ତାଙ୍କ କାନରେ ପଡୁଛି ଅହରହ, ସେଠି ମୃତ୍ୟୁର ଶୀତଳତା ବା ରୁକ୍ଷତା ସଂପୂର୍ଣ୍ଣ ଗୌଣ ।

ବଡ଼ ସରଳ, ନିରୀହ ମଣିଷ ଜଣେ । କେମିତି ଥିବେ ସେ ଏବେ ପୋଲିସ ଷ୍ଟେସନରେ । କେଉଁ ଅପମାନକୁ ସେ ପ୍ରତ୍ୟକ୍ଷ କରୁଥିବେ । ଜୀବନରେ ଏତେ ବଡ଼ ଅସମ୍ମାନକୁ କେମିତି ହଜମ କରିଥିବେ ସେ ! ଯଦି ଭୟରେ ହାର୍ଟ ବିଟ୍ ବଢ଼ିଯାଇଥିବ ? ସରବିଟ୍ରେଟ କ'ଣ ସାଙ୍ଗରେ ନେଇ ଯାଇଥିବେ ?

ପୁଲିସ ମୁହଁରେ ବା କେଉଁ ବାଡ଼ବତା ଥିବ ? ଯଦି ଅନାବନା କଥା କହି ଅଶ୍ଳୀଳ କମେଣ୍ଟ କରୁଥିବ ? ଯଦି ଲାଠିଟା ଧରି ଟିକେ ଖେଂଚି ଦେଉଥିବ ? କେମିତି ଥିବେ ସେ ? ସୌମ୍ୟ ! କାହିଁକି ଫେରୁନୁ ତୁ ? ବାଇଶ ବର୍ଷର ପିଲାଟା । ଅଳ୍ପ ପାଠୁଆ । ଇଂରାଜୀରେ ପଦେ କହି ଆସେନି । ନରମ ଚେହେରା । କାହାକୁ ମୁହଁଖୋଲି ଟାଣିକରି କହିପାରେନି । ଅଫିସିଆଲ କାରବାର ବୁଝିବା ତା' ପାଇଁ କଷ୍ଟ । ତା'ର ବା କି କର୍ତ୍ତୃତ୍ୱ ଅଛି ପୁଲିସର ସାମ୍ନା କରିବ ? ଏ ଦୁଃସମୟରେ ଘରେ ବି କେହି ନାହାନ୍ତି । କିଏ ବା ଥାନ୍ତା ଆଉ ?

ସେ କ'ଣ କରିବ ଭାବି ପାରୁନି । କାହା ଘରକୁ ଦୌଡ଼ିଯାଇ ସାହାଯ୍ୟ ଲୋଡ଼ିବ ? ପଡ଼ିଶାଘର ଏଠି କେହି କାହାକୁ ଚାହାନ୍ତି ନାହିଁ । ପାଠ, ଶାଠ ଶିକ୍ଷାଦୀକ୍ଷାର କିଛି ମାନେ ହୁଏନି । ମାନବିକତା, ସହାବସ୍ଥାନ, ପାରସ୍ପରିକ ସଂବେଦନଶୀଳତା ଏଠି ଅଭାବ । ଏତେ ରାତିରେ ରିକ୍ସା ଚଢ଼ି ସେ ଯିବ କେଉଁଠିକୁ ?

ସେ ସେହି ସୋଫା ଉପରେ ସ୍ଥବିର ପାଲଟି ଯାଉଛି । ହେ ଭଗବାନ ! ତା'ର ଗୋଡ଼ ଯେ ଉଠୁନି । ସେ ମୁଣ୍ଡରେ ହାତ ଦେଇଦେଲା ଆଉ ତଳକୁ ମୁହଁ ପୋତିଦେଲା ।

ଭାଉଜ ଡାକିଲେ- ଖାଇବ ଆସ । ସେ ମନେ ମନେ ହସିଲା ବଡ଼ ଅସହାୟ ଢ଼ଂଗରେ । ଏତିକିବେଳେ ତୁମର ଖାଇବାକୁ ଦେବାର ସୁଆଗ ବଳିପଡ଼ିଲା ।

ସେ ପୁନଶ୍ଚ କହିଲେ-ସୌମ୍ୟ ଆଉ ବାପାଙ୍କ ପାଇଁ ଏଇଠି ବଢ଼ା ହୋଇଛି ।

– ହଁ...ହଁ... ଠିକ୍ ଅଛି । ତୁମେ ଶୋଇପଡ଼ । ବାପା ନଫେରିବାଯାଏ ମୁଁ ଖାଉନି ।

ନିରୁତାପ ତାଙ୍କ ବ୍ୟକ୍ତିତ୍ୱ ଉପରେ ଉତପ୍ତ ଲାଭା ଇଡ଼ିହୋଇଗଲେ ବି ସେ ସେମିତି କିଛି ନଘଟିବା ପରି ଚାହିଁଲେ ଏବଂ ଶୋଇବାକୁ ଗଲେ ।

ଘର ଭିତରେ ନିଥର ସ୍ତବ୍ଧତା । ପଥର ପରିଭାରି । ଚାପି ଧରିଛି ତାକୁ । ଭାବିଲା ଆଲୁଅ ଲିଭାଇ ଦେବ । ଅନ୍ଧାରରେ ବସି ରହିବ । ସେ ଘରକୁ ଚାହିଁଲା । ଛାପିଛାପି କାନ୍ଥ । ସୀମା ଉପରେ ଘର ତୋଳା ହୋଇଛି । ପଛପଟୁ ପଲସ୍ତରା ହୋଇନି । ବର୍ଷାରେ ଭିଜିଯାଉଛି । ତା'ର ଦାଗ ଲିଭିନି । ସାମାନ୍ୟ ଚୂନ ଲେପା ହୋଇପାରୁନି । ବାପାଙ୍କ ଖଟ ଉପରେ ପଡ଼ିଛି ଛିଡ଼ା କନ୍ଥା, ମଇଳା ଚିକିଟା ତକିଆ । ହୁଏତ ଚିରିଯାଇଛି ଉପର କଭରଟା । ବାପା ନିଜେ ତକିଆ ତିଆରି କରନ୍ତି । ଢେଗାଢେଗା ସିଲେଇ ଅପଟୁ ହାତର । ତଥାପି କରନ୍ତି । କ୍ଷଣେ ବସି ପାରନ୍ତି ନାହିଁ । ସବୁବେଳେ କର୍ମ ତତ୍ପର । ଚୁଂଗୁ ଚୁଂଗୁ । ଯାହାହେଉ ଗୋଟାଏ କରିଦେବେ । ଏବେ ଥରେ ସଜନା ଗଛରେ ଚଢ଼ି ଛୁଇଁ ପାରୁଥିଲେ । ତା' ଆଖି ଖୋସିହୋଇଯାଇଥିଲା । ପାଟି କରିବାରୁ ଓହ୍ଲାଇଲେ । ଛିଣ୍ଡା କଂଥା ଉପରେ ବେଡ଼ସିଟ୍‌ଟା ଲୋଚାକୋଚା ହୋଇ ପଡ଼ିଥିଲା । ହାତରେ କାଟିବାକୁ ଡାକ୍ତର ମନା କରିଛନ୍ତି । ତଥାପି କାଟନ୍ତି । ଔାଉର ଶ୍ୱାସ । କାମ କରିକରି ଗୋଡ଼ ଆଂଗୁଠି ସବୁ ଫଗସ ଇନ୍‌ଫେକ୍‌ସନ ହୋଇଯାଇଥାଏ । ବୟସ ହେଲାଣି । ତଥାପି ସଫାସର୍ଫିକରେ । ଘରର ଅବୟବରେ କି ଦାରିଦ୍ର୍ୟ । ଆଲୁଅ ଲିଭାଇଦେଲେ ସେ ଏସବୁ ଦେଖିବ ନାହିଁ । ତା'ର ଗ୍ଲାନିମୟ, ପରାଜିତ ଜୀବନର ଗାଥା ତାକୁ ଶୁଣାଯିବ ନାହିଁ ଏ ରାତିରେ । ନଦୀବଂଧ ଉପରେ ଗୋଟାଏ ବାହାଘର ନାଁ-ମୂର୍ଦ୍ଧାର ଯାଉଥିବାର ବାଜା ଶବ୍ଦ ହେଲା । ଦୁଇଟାଯାକ ତା' ପାଇଁ ଛାତିଥରା ଶବ୍ଦପରି । ଭାବିଲା ଆଲୁଅ ଲିଭାଇଦେବ । ଲିଭାଇଦେଲେ ନୈଃଶବ୍ଦ୍ୟ ଅଂଧକାରକୁ କାମରେ ଲଗାଇ

ପଥରପରି ତା' ଉପରେ ଚାପି ବସିବ । ଶ୍ୱାସରୁଦ୍ଧ ହେବ ସେ । ତେବେ କ'ଣ ଆଲୁଅ ଜାଳି ଏମିତି ରାତିଯାକ ସୋଫା ଉପରେ ବସିଥିବ ।

ଭାଉଜ ଘୁଂଘୁଡ଼ି ମାରୁଥିଲେ । ଫୁ-ଫୁ...ଶବ୍ଦ ଶୁଭୁଥିଲା । ସେ ଅପେକ୍ଷା କରିବ ବାପା ଫେରିବା ଯାଏ । କାଲିପଛେ ଅଫିସ୍ ଛୁଟି ନେଇ ରହିବ । ସେ ଚାହେଁ ଆଜି ରାତିରେ ବାପା ତା'ର ଫେରି ଆସନ୍ତୁ ।

ପୁଣି ଛୁଟି ଆସିଲା ବାହାଘର ପ୍ରୋସେସନର ଶବ୍ଦ । ବଡ଼ ଅସହ୍ୟ ତା' ଛାତିର ଯନ୍ତ୍ରଣା ଏ ଶବ୍ଦରେ । ତା'ର ମନେହେଲା ଏ ଶବ୍ଦ ଦୂରେଇଯାଉ ଅଂଧକାରରେ କାଠଯୋଡ଼ିର ବିସ୍ତୃତ ବାଲୁକା ରାଶିରେ । ଅଥଚ ତା' କାନକୁ ଶତଶତ ଶବ୍ଦକରି ଆଗେଇ ଆସିଲା ସେହି ଶବ୍ଦ । ଗୋଟାଏ ଗଢ଼ିବାର, ସ୍ୱପ୍ନର, ସାର୍ଥକତାର ଶବ୍ଦ । ପୁଣି ମନେହେଲା ସେହି ସ୍ୱପ୍ନ ଭାଂଗିଯିବାର ଶବ୍ଦ । ସବୁ ମିଶି ମିଶ୍ରରାଗ ସୃଷ୍ଟି କଲା ନିଃଶବ୍ଦତାରେ । ଗଢ଼ିବା ଆଉ ଭାଂଗିବାର ସୀମା ରେଖାଉପରେ ଠିଆହୋଇ ସେ ଭାବି ପାରିଲାନି ଗୋଟାଏ ଜୀବନର ସାର୍ଥକତା କେଉଁଥିରେ ଥାଏ । ପୁଣି ତା' ଭିତରୁ ଉଠିଆସିଲା ବାପାଙ୍କର ନିରୀହ, ସରଳ, ହାରିଯାଉଥିବାର, ଛୋଟ ହୋଇ ପଡୁଥିବାର ମୁହଁ । ଓ ଗଡ୍ ! ଏମିତି କାହିଁକି ହୁଏ ? ସରଳ, ନିରୀହମାନଙ୍କୁ ଏମିତି ଦଣ୍ଡ ବିଧାନ ହେଇଥାଏ ? କେଉଁ ଜନ୍ମର ପାପର ଫଳଭୋଗ ପାଇଁ ?

ସୁଜୟ ଆଜି ଦୂର ବିଦେଶରେ । ହୁଏତ ଶୁଣିବ ଘଟଣାକୁ ପରୀରାଇଜର କାହାଣୀ ପରି । ଅନୁଭବିବ ନାହିଁ କେବେହେଲେ ଏଇ ଭୟଙ୍କର ଶୀତରାତିରେ କାଲୁଆ ପାଲଟି ଯାଉଥିବା ତା' ବାପାର ଅସହାୟ ପଣିଆକୁ । କିଏ ବା ଅନୁଭବିବ ? ଯେଉଁ ବୋହୂଟିଏ ଏଠି ଶୋଇଚି ସେ ବି କ'ଣ ଅନୁଭବିବ ? ନାଁ ସୌମ୍ୟ... ଯିଏ ଖୋଜିବାକୁ ଯାଇଛି, ସେ ? କେଜାଣି କାହିଁକି ତା'ର ଏଇ ପଇଁତ୍ରିଶ ବର୍ଷର ଜୀବନକାଳ ଭିତରେ ସେ ଏତେଦୂର ଅନ୍ତରର କ୍ରନ୍ଦନ ଶୁଣିପାରି ନଥିଲା । ଯେମିତି କେଉଁ ମହାକାଳର ସ୍ତର ଭେଦି ସେହି କ୍ରନ୍ଦନର ଧ୍ୱନି ତା' ଛାତି ଫଟାଇ ଦେଉଛି । ସେ ଅନୁଭବ କରୁଛି ବାପା କେମିତି ଅସହାୟ ମଣିଷଟିଏ ହୋଇ ଏଇ ଶୀତ ରାତିରେ ତଳକୁ ମୁହଁପୋତି ଆତ୍ମମର୍ଯ୍ୟାଦାକୁ ହରାଇ ଆସି ପହଂଚୁଛନ୍ତି ଗେଟ୍ ପାଖରେ । ସେ କାନ୍ଦି ଉଠି ବାପାଙ୍କ ଛାତିରେ ଲୋଟି ଯାଉଛି । ମନେହେଲା ଯେମିତି ପ୍ରଥମଥର ପାଇଁ ବାପାଙ୍କ ଛାତିରେ ମୁଣ୍ଡରଖି କାନ୍ଦିବାକୁ ତାକୁ ବହୁତ ଇଚ୍ଛା ହେଉଛି ।

ସୌମ୍ୟ...ତୁ କୁଆଡ଼େ ? କେଉଁଠି ଅଛୁ ? କେଉଁ ପରିସ୍ଥିତିରେ ? ବସିଛୁ କି ବାପାଙ୍କ ସାଙ୍ଗରେ ପୋଲିସ୍ ଷ୍ଟେସନ୍‌ରେ ? ଖାକି ପୋଷାକଧାରୀ ମଣିଷଟି ସାମ୍ନାରେ ତୋ'ର ତ ହୃତକମ୍ପ ହୋଇଯାଉଥିବ । କେମିତି ସେମାନଙ୍କ ସହ କଥା କହିବୁ ?

କାହାକୁ ଡାକିବ ସେ ? ଏ ଥଣ୍ଡା, ନିଃଶବ୍ଦ ରାତିରେ ! କେଉଁ ପଡ଼ିଶା ଘର ଦୁଆର ମୁହଁରେ ଠିଆ ହୋଇ କହିବ ବାପାଙ୍କୁ ପୁଲିସ୍ ନେଇଯାଇଛି । ଟିକିଏ ସାହାଯ୍ୟ କରନ୍ତୁ । ପୁଲିସ୍ ନାଆଁ ଶୁଣିଲେ ତା'ର ବାପାଙ୍କୁ କ୍ରିମିନାଲ ବୋଲି ସନ୍ଦେହ କରିବେ । ମନେମନେ ଏ ଘଟଣାଟି ପାଇଁ ଉଲ୍ଲସିତ ହେବେ ଏବଂ ମୁହଁରେ ଦୁଃଖ ପ୍ରକାଶ କରିବେ । ଏଠି ଅନେକ ଶିକ୍ଷିତ ଲୋକଙ୍କର ମହଲ ତୋଳା ଚାଲିଛି । ହେଲେ ସେହି ମହଲାର ଇଟା, ସିମେଣ୍ଟ, କଂକ୍ରିଟ ପରି ସେମାନଙ୍କ ମନ । ଖୁବ୍ ପଥୁରିଆ । ତୁମର ଦରଦ, ଶୋକ, ଅଶ୍ରୁ, ଦୀର୍ଘଶ୍ୱାସ ଏଠି ନିରର୍ଥକ । ଆହା...ଚୁ...ଚୁ...ର କୃତିମ ସୋହାଗ ଖୁବ୍ କ୍ଷଣିକ । ହୁଏତ ତୁମର ଗେଟ୍ ଦୁଆର ମୁହଁ ସେପଟୁ ସେମାନେ କିଛିଟା  କଥା ପଚାରିଦେଇ ଗୁରୁତ୍ୱ ନ ଦେଇ ଚାଲିଯିବେ । କାହାକୁ ଡାକିବ ସେ ?

ଭଲ ହୋଇଛି ଆଜି ଘରେ ବୋଉ ନାହିଁ । ନ ହେଲେ ତା'ର ବ୍ୟାକୁଳ କାନ୍ଦଣାର ଧ୍ୱନିରେ ପରିବେଶ ଆହୁରି ମର୍ମାନ୍ତିକ ହୁଅନ୍ତାଣି । ବଡ଼ ଅବୁଝା ସେ । ବଡ଼ ଅଧୈର୍ଯ୍ୟ ପ୍ରକୃତିର । ତା'ର କାନ୍ଦଣାରେ ଅସ୍ତବ୍ୟସ୍ତ ହୋଇପଡ଼ିଥାନ୍ତେ ସମସ୍ତେ । ସେ ଆଜି ଗାଁରେ । ଏ ଶୀତ ରାତିରେ ନିଃସହାୟ ହୋଇବାପାଙ୍କୁ ଚାହିଁ ବସିଥିବାର ଗଭୀର ଶୂନ୍ୟଭାବଟିଏ ସେ ଅନୁଭବ କରିପାରିବନି । ଅନୁଭବ କରିପାରିବ ନାହିଁ ଏ ଶୀତରାତି  ମଣିଷକୁ କେମିତି ଆହୁରି ଜଡ଼ କରିଦିଏ । ଆହୁରି ପ୍ରତିକ୍ରିୟାହୀନ, ନିଥର । ଯେଉଁଠି ଆଖିର ଲୁହ ମଧ୍ୟ ବାହାରି ପାରେନା ।  ଏସବୁ ସ୍ୱର୍ଶକାତର ମୁହୂର୍ତ୍ତଟିଏ କେବଳ ଲେଖା ହେବାକୁ ଥିଲା ତା'ରି ଛାତି ତଳେ ?

ସେ ଘଡ଼ିକୁ ଚାହିଁଲା । ରାତି ଏଗାରଟା । କାଲି ସକାଳୁ ବଡ଼ଭାଇ ଖବର ପାଇ ଆସିବେ । ରାଜନୀତିର ବଡ଼ପଣ୍ଡାମାନଙ୍କ ସହ ତାଙ୍କର ସଂପର୍କ ଥିଲେ ବି ସେ ଜାଣେ ସେ ଅପାରଗ । ତାଙ୍କ ଭିତରେ ନାହିଁ ପ୍ରତିକ୍ରିୟାଶୀଳ, ଦୁର୍ଦ୍ଦାନ୍ତ ପୌରୁଷତ୍ୱ । ଯିଏ ତଥାକଥିତ ରାଜନୀତିଜ୍ଞଙ୍କ ଦ୍ୱାରସ୍ଥ ହୋଇ ଗୋଟିଏ ହୁଂକାରରେ ଛଡ଼େଇ

ଆଣିବେ ପୁଲିସ୍ ଷ୍ଟେସନ୍‌ରୁ ବାପାଙ୍କୁ । ବରଂ ସେ କେତେଟା ରାଜନୀତିଜ୍ଞଙ୍କ ଗୋଡ଼ାଣିଆ କେବଳ । ଏକଥା ଶୁଣୁଶୁଣୁ ସେ ଭୟ ପାଇଯିବେ । ମୁହଁ ଶୁଖିଯିବ । କଳା ରଙ୍ଗର ଶରୀର ଆହୁରି ଦିଶିବ ମ୍ଳାନ । ଯେମିତି କି ଗୋଟାଏ ଝଡ଼ରେ ବିଧ୍ୱସ୍ତ । ସେ ଯେ ପାରିବେନି କିଛି ତା' ସେ ଜାଣେ । କେମିତି ଉଦ୍ଧାର କରିହେବ ତାହେଲେ ବାପାଙ୍କୁ ?

ଏ ରାତିରେ କେଉଁଠି ବସିଥିବେ ସେ ! ଥଣ୍ଡା କାକର ରାତିରେ । ମୁଣ୍ଡ ଉପରେ ଛାତଟିଏ ଥିବ ତ ? ଶିଶିର ଅଜାଡ଼ି ହୋଇ ପଡୁନଥିବ ତ ? ପୁଲିସିଟି ଅବଜ୍ଞା ସୂଚକ ଅଶାଳୀନ କଥାରେ ତାଙ୍କୁ ଅପମାନିତ କରୁଥିବାର ମୂହୂର୍ତ୍ତମାନଙ୍କୁ କେମିତି ସହୁଥିବେ ? ଭୋକ ଆକୁଳିଆ । ଚା' ଟିକେ ନ ପିଇଲେ ଅସ୍ଥିର ଲାଗେ । ଏତେ ସମୟ ଧରି କେଉଁ ପୋଲିସ ଷ୍ଟେସନରେ ବା ତାଙ୍କୁ ଖାଇବାକୁ କ'ଣ ମିଳିଥିବ ନାଁ ସେ ଯାଇଥିବେ ଟେନ୍‌ସନ୍ ଭିତରେ । ଭାରି ଦରଦୀ, ନରମ ତାଙ୍କର ହୃଦୟ । ଘରେ ଟିକିଏ ଟିକିଏ କଥାରେ କାନ୍ଦି ପକାନ୍ତି । ସେ ମନେମନେ କାନ୍ଦି ପକାଉ ନାହାନ୍ତି ତ ? କେମିତି ଥିବେ ବାପା ? ଅପମାନିତ, ଲାଞ୍ଛିତ ହୋଇ ବସିଥିବାର ବେଳା ତାଙ୍କ ପାଇଁ କେମିତି ହୋଇ ପଡୁଥିବ ଅସହ୍ୟ ?

ସେ ଚମକି ପଡ଼ିଲା । ଲାଗିଲା ପୁଲିସଟା ଆଉ ପାଦେ ଆଗେଇ ଯାଇନି ତ ! ଅଶ୍ଳୀଳ ଭାଷାରେ ଗାଳିଗୁଲଜ କରି ଟାଣି ନେଉନି ତ ଲୁହା ଗ୍ରୀଲ୍‌ର ଦରଜା ସେପଟକୁ ? ଗେବି ଦେଉଛି କି ତା' ବାଡ଼ିରେ ଟିକେ ଟିକେ ? କହୁଛି କି ଯା' ଅନ୍ଦରକୁ । ଜୀବନରେ ଦୀର୍ଘ ବର୍ଷ ଧରି ସରକାରୀ ଚାକିରି କରି ସୁନାମ ଅର୍ଜନ କରିଥିବା ମଣିଷଟି, ସିନିସିଅର, ସଚ୍ଚୋଟ ମଣିଷଟି ଏବେ କେଉଁ ସନ୍ଦେହର ବଶବର୍ତ୍ତୀ ହୋଇ ପୁଲିସ୍ କଷ୍ଟୋଡ଼ିରେ ?

ଦୀର୍ଘଶ୍ୱାସ ତା'ର ଠୁଳ ହେଉଥିଲା ରାତିର ନିଃଶବ୍ଦତାକୁ ଆଡ଼େଇ । ସେ ଯେମିତି ଅନୁଭବ ଶୂନ୍ୟ ହୋଉପଡୁଥିଲା । ମନେ ହେଉଥିଲା କେଉଁ ଆଦିମ ପାହାଡ଼ ପରି ଜଡ଼ ପାଲଟି ଯାଉଛି । ଘରେ କେବଳ ଭାଉଜଙ୍କ ନିଃଶ୍ୱାସ ଏବଂ ଫୁ...ଫୁ... ଶବ୍ଦ । ବାହାର ପୃଥିବୀରେ ଅନେକ ନିଃଶବ୍ଦତା ।



# (୧୩)

ସୌମ୍ୟ ତା' ମାଲିକ ହାତରୁ ଫୋନ୍‌ଟା ଧରିଥିଲା ଏବଂ ଭୟରେ ଥରୁଥିଲା । ତା'ର ମାଲିକ ବୁଝିନେଇଥିଲେ ସବୁକଥା । ସେ ବାଗ୍ରୀ ପୁଅର ସାଙ୍ଗ । ଶିକ୍ଷିତ ଲୋକ । କି ପ୍ରକାର ଚାଲ ହୋଇପାରେ ସେ ବୁଝିଯାଇଥିଲେ ।

ସୌମ୍ୟ ସରଳ । ନିରୀହ । ସଚ୍ଚୋଟ କର୍ମଚାରୀ । ତାକୁ ବୁଝାଇବାକୁ ଯାଇ କହିଲେ ବ୍ୟସ୍ତ ହୁଅନା । ଅନେକ ମଦ୍ୟପ ସାଙ୍ଗ ବାଗ୍ରୀର । ଚାରିଟାପରେ ଏକ କ୍ଲୁଟ୍ ହୁଅନ୍ତି । ସେମାନଙ୍କ ଭିତରୁ କେହି ଏ କାଣ୍ଡ କରିଛି । ମଦ ଖାଇବାପରେ ମଣିଷ କେଉଁ ମୁଣ୍ଡ ଠିକ୍‌ଥିବ । ସେହି ମୁଦ୍ରଟିଏ ଦେଖି କେହି ଦସ୍ତଖତ କରିନେଇଛି ଆଉ ଦାଦାଜୀଙ୍କୁ ଧରେଇ ଦେଇଛି । ତାଙ୍କ ପରି ବୟସ୍କ ଲୋକଙ୍କୁ ଦଣ୍ଡ ଦେଇଛନ୍ତି ଏମାନେ । ନିଃଶ୍ଚୟ ଧର୍ମ ସଂକଟରେ ପଡ଼ିବେ । ତୁମେ ଯାଇ ଦେଖ କ'ଣ ହେଲା । ଫେରିଆସି କହିବ ।

ସୌମ୍ୟର ମନ ଆଲୋକ ଗତିରେ ଛୁଟୁଥିଲା । ଭଙ୍ଗା ସାଇକେଲ୍‌ଟା ସେହି ଗତିରେ ଚାଲୁନଥିଲା । ଯେମିତି କି ଅନେକ ଆଲୋକବର୍ଷ ଲାଗିଯିବ ତାକୁ ବାଗ୍ରୀ ବୁଢ଼ାର ଅଫିସରେ ପହଞ୍ଚିବାକୁ । ଡିସେମ୍ବର ଏ ଶୀତ ସଂଧ୍ୟାରେ ମଧ ତା' ଦେହରୁ ଗମ୍‌ଗମ୍ ଝାଳ ବୋହି ଯାଉଥିଲା ।

ସେ ବାଗ୍ରୀର ଦୋକାନରେ ପହଞ୍ଚି କେଉଁ ଅବାଞ୍ଛିତ ପରି ଠିଆ ହୋଇଥିଲା । ''ବେଟା ଆଓ... ଆଓ । ଇଧର ଆଓ । ତୁମ୍ଭାରା ପିତାଜୀକୋ ପୋଲିସ ଉଠାକେ ଲେ ଗୟା ।'' ଶଳା ହାରାମି ବାଗ୍ରୀ । ତୋ ଜିଭ କେମିତି ଓଲଟିଲା ଏ କଥା କହିବାକୁ । ଭାରି ତ ସମ୍ମାନ ଦେଉଥିଲୁ ଦାଦାଜୀ କହି... । ଏଇ ପ୍ରତିଦାନ ଦେଲୁ ବୁଢ଼ା ଲୋକ ଜଣଙ୍କୁ । ବାଗ୍ରୀ ପାଖରେ ଠିଆ ହୋଇଥିଲା ବିହାରି ସିଂହ । ସେ ତାଚ୍ଛଲ୍ୟରେ ହସ ହସିଲା ଏବଂ ବଢ଼ାଇଦେଲା ସେହି ଡ୍ରାଫ୍‌ଟ । ଯେଉଁଠି ତା' ବାପାଙ୍କୁ ସେମାନେ ଚୋର, ଧୂର୍ତ୍ତବୋଲି ବାଖ୍ୟା କରିଥିଲେ । ନହେଲେ କ'ଣ ପାଇଁ ଲେଖିଥିଲା । ''ଇନ୍ କୋନାଇଭାନ୍‌ସ'' । ତୁ ଦେଖିଥିଲୁ ସେ କାହାକୁ ଏଥିରେ ସାହାଯ୍ୟ କରିବା ? ତୋ ଆଲମିରାକୁ କାହିଁକି ଖୋଲା ପକାଉଥିଲୁ ? ଚେକ୍

ବହିଟାଏ ଜଣେ ଚୋରେଇନେଲେ ବି କ'ଣ ବିନା ସିଗନେଚର୍ ମିଶାଇ ବ୍ୟାଙ୍କର ଦୁଇ ଦୁଇଟା ଅଫିସର୍ ପାସ୍ କରିଦେଲେ । ଶଳା ହାରାମି କା ଔଲାଦ । ମୋ ବାପାକୁ ପୁଲିସ୍ ଥାନା ପଠାଉଛି ପଇସା ବଳରେ । ପୁଲିସକୁ ଏଠି ମାଲ ପିଆଇ ହାତରେ ରଖିଛୁ । ମୋତେ ପୁଣି ପଢ଼ାଉଛି ଡ୍ରାଫଟ' । ତୋ କ୍ରେଡ଼ିଟ୍ ଦେଖେଇ ହେଉଛୁ ?

ସୌମ୍ୟର ଆଖିରୁ ନିଆଁ ବାହାରୁଥିଲା । ସେ କାଗଜଟା ଫୋପାଡ଼ି ଦେଇ ତୁରନ୍ତ ବାପାଙ୍କ ପାଖକୁ ଯିବାକଥା ଚିନ୍ତା କଲା ।

ଶୁଣ ବାବୁ - ସିଂହ ଡାକିଲା । ତୁମର ବାପା ବାଗ୍ରୀବାବୁଙ୍କୁ ପଚିଶ ହଜାର ଟଙ୍କା ମାଗୁଥିଲେ । ବଡ଼ ଭାଇ ବ୍ୟବସାୟ କରିବେ ବୋଲି । ଏଇଟା ମିଛ ନୁହେଁ । ସେହି ଲୋଭରେ ଯଦି କରିଥିବେ ?

ସିଂହର କଥାର କି ଉତ୍ତର ଦେବ ସୌମ୍ୟ ? ସିଂହ ବି ଏତେ କାହିଁକି ଏମାନଙ୍କ କଥାରେ ମୁଣ୍ଡ ପୂରାଉଛି । କ'ଣ ତା'ର ଉଦ୍ଦେଶ୍ୟ । ଜଣେ ପଚିଶ ହଜାର ଟଙ୍କା ଧାର ମାଗିପାରେ ଭଲ ସଂପର୍କ ଦୃଷ୍ଟିରୁ । ଯା ବୋଲି ଚୋର କହି ପୋଲିସ୍ କଷ୍ଟୋଡ଼ିକୁ ପଠାଇବେ ।

ଏଥର ସୌମ୍ୟ ପାଟି ଖୋଲିଲା । ''ବ୍ୟାଙ୍କବାଲା କ'ଣ ଢୁଳେଇକରି ପେମେଣ୍ଟ କରିଛନ୍ତି ? ଦୁଇ ଦୁଇଟା ଅଫିସର ପାସ୍ କରିଛନ୍ତି ସିଗ୍‌ନେଚର । ମୋ ବାପାଙ୍କ ଅକ୍ଷର ମୁକ୍ତାପରି ଝଟ୍‌କୁଥାଏ । ଆଉ କେମିତି ମିଶିବ ଏଇ ଅଳ୍ପ ଶିକ୍ଷିତ ବେପାରୀ ବାଗ୍ରୀବୁଢ଼ାର ଅକ୍ଷର ସାଙ୍ଗରେ ? ତୁମକୁ ଲାଜ ସରମ ନାହିଁ ପିତୃସ୍ଥାନୀୟ ମଣିଷ ଉପରେ କଳଙ୍କ ଲଗାଉଛ ?

— ହଉ, ଯା'...ଯା' । ସିଆଡ଼େ କାହାକୁ ଜ୍ଞାନ ଶୁଣାଇବୁ । ସିଂହ କହିଲା- ଦେଖ ତୋ ବାପାର ଦଶା ସିଆଡ଼େ କ'ଣ ହେଲା । ଯା' ଶୀଘ୍ର । କ୍ୟାଣ୍ଟନ୍‌ମେଣ୍ଟ ଥାନାକୁ ।

ୟୁ : ବ୍ଲଡି ସଟଅପ୍ ! ମୋ ବାପାର ତୁମେ କ'ଣ କରିବ ମୁଁ ବୁଝିବି ! ମିଃ ସିଂହ ଅସମ୍ଭବଭାବେ ନୀରବ । ବଡ଼ ବଡ଼ ଆଖିରେ ଚାହିଁଥାଏ କେବଳ ! ଭାବିନଥିଲା ଏତେବଡ଼ ଉତ୍ତରଟାଏ ସେ ଢେଲାପରି ତା ଉପରକୁ ଫୋପାଡ଼ି ଦେବ ।

ସୌମ୍ୟ ସାଇକେଲ ଘୂରାଇଲା ଥାନା ଆଡ଼େ । ବାପା ପଚିଶ ହଜାର ଟଙ୍କା ମାଗୁଥିଲେ ଭାଇର ବ୍ୟବସାୟ ପାଇଁ ? କାହିଁକି ସେ ବଡ଼ ପୁଅ ପାଇଁ ଏତେ ଦରଦୀ । ସେ ଆଦୌ ବୁଝିପାରେ ନାହି । ଯାହା ଜୀବନ ଯାହାର । ସେ ଭାବିବ

ଜୀବନ ଗଢ଼ିବାର କଥା । ଏମାନେ ଆଉ କାହିଁକି ଗୋଟାଏ ନଷ୍ଟ, ୱେଷ୍ଟ ପ୍ରଡ୍‌କ୍ଟ କଥା ଭାବନ୍ତି ? ଏତେ ଗୋଟାଏ କ'ଣ ସହାନୁଭୂତିଶୀଳ ତାଙ୍କ ପାଇଁ ? ଜୀବନରେ ଯିଏ ତାଙ୍କୁ ଏତେ ଧୋକା, ଏତେ ଯନ୍ତ୍ରଣା ଦେଇ ସାରିଲାଣି ? ଆଉ ମଧ୍ୟବୟସରେ ସେ ବା କ'ଣ କାମ କରିପାରିବ ନାଁ ଖଟିପାରିବ ? ଆଜିଯାଏ ଯିଏ ସ୍ୱାବଲମ୍ବୀ ହୋଇପାରିନାହିଁ, ସତୁରୀବର୍ଷର ବାପା ଆଗରେ ହାତ ପତାଏ, ଚରମ ବିଶୃଙ୍ଖଳିତ ଜୀବନ ଜୀଏଁ, ତା' ପାଇଁ କାହିଁକି ନିଜର ଇଜତ୍ ସାରିଲେ ? ହୋଇଥିବ ଅନ୍ୟକାହାକୁ ମାଗିବାର ସାହାସ ନାହିଁ ଭାଇର । ବାପାଙ୍କୁ ମାଗିଥିବେ । ରୋଜଗାରର ପଛାଟି ନ ଭାବି ବରଂ ଆହୁରି ବୋଝ ହୋଇ ଯାଉଛନ୍ତି ଏମିତି ଟଙ୍କା ମଗାମଗି କରି । ଆଉ ଏ ଘଟଣାଟି ହୋଇଯାଇଛି କାକତାଳୀୟ । ସେହି ସୁଯୋଗ ନେଇଛି ସିଂହ । ଶାନ୍ତନୁକୁ ଶିଖାଇ ଡ୍ରାଫ୍‌ଟିଂ କରିଛି । ହେଲେ ଯେତେଦୂର ସମ୍ଭବ ବୁଢ଼ାକୁ ମାଲପିଆଇ ସିଂ ହିଁ ସାଇନ୍ କରିନେବା କଥା ତା'ର ମାଲିକ ସନ୍ଦେହ କରନ୍ତି । ବାଗ୍ରୀ ବୁଢ଼ା ଆଜି ତା'ର ମଦ୍ୟପ ସାଙ୍ଗଙ୍କ ପାଇଁ ଫସିଛି । ତଥାପି ଛାଡ଼ି ପାରୁନି ସଙ୍ଗ । ହେଲେ ତା'ର ପାପ କର୍ମ ପାଇଁ ସେ ଦଣ୍ଡ ଭୋଗୁ । ଅନ୍ୟକୁ କାହିଁକି ଫସଉଛି । ଦୁଃଖ ଦେଉଛି । ମାନସିକ, ଶାରିରୀକ ନିର୍ଯ୍ୟାତନା ଦେଉଛି । ଧର୍ମର ସଂକଟକୁ ଡାକି ଆଣୁଛି ?

ସାଇକେଲ ଚଲାଉ ଚଲାଉ ସୌମ୍ୟ ବଡ଼ ଥକି ଯାଉଥିଲା । ଭୋକ ଲାଗୁଥିଲା ତାକୁ । ଭୟ, ଉତ୍ତେଜନାରେ, ଉଦ୍‌ବେଗରେ ଝାଇଁଝାଇଁ ହୋଇଗଲା ତା'ର ମଥା । ତା' ହୃତପିଣ୍ଡର ଶବ୍ଦ ସେ ଡାଉଁଡାଉଁ ହୋଇ ପଡୁଥିବାର ଶୁଣିପାରୁଥିଲା । ମନେ ହେଉଥିଲା ଏ ସହରର ରାସ୍ତାଘାଟ ସବୁ ତା' ପାଇଁ ଅଦେଖା, ଅଜଣା । ସବୁ ଯେମିତି ନିଃଶବ୍ଦ, ନୀରବ, ମୂକ ପାଲଟି ଯାଉଛନ୍ତି । ଏମିତି ଗୋଟାଏ ଏକୁଟିଆ ପଣ ସେ ଆଗରୁ କେବେ ମେହସୁସ୍ କରିନଥିଲା । ମଣିସାହୁ ଛକ ପାଖରେ ସେ ପ୍ରକୃତରେ ସାଇକେଲରୁ ପଡ଼ିଯାଇଥାନ୍ତା । ପଡୁପଡୁ ନିଜକୁ ସମ୍ଭାଳିନେଇ ପୁନଶ୍ଚ ଆଗେଇଥିଲା କ୍ୟାଣ୍ଟିନ୍‌ମେଣ୍ଟ ଥାନା ଆଡ଼କୁ ।

ସେ ଥାନାର ପାଖାପାଖି ହେଉଥିଲା ଏବଂ ତା'ର ଆଶାଙ୍କା ଆହୁରି ଘନ ହେଉଥିଲା । ବାପାଙ୍କୁ କେଉଁ ଅବସ୍ଥାରେ ଦେଖିବ ତା' ଚିନ୍ତା କରିପାରୁନଥିଲା । ବାଗ୍ରୀ ଏ କଥା ବି କହିଲା- ଦାଦାଜୀ ଅଚେତ୍ ହୋଇ ଯାଇଥିଲେ । କାହିଁକି ଏତେ ବଡ଼ ଅପମାନ କଲା ସେ ? କାହିଁକି ଏ ଦଣ୍ଡ ଦେଲା ବାପାଙ୍କୁ ? ଗୋଟାଏ ବୋଲି ପୁଅ ଜନ୍ମ କରିଛୁ ଯେ ସେ ତୋତେ ପଚାରୁନି । ତୁ ଯେ କି ହୀନ ଅବସ୍ଥା ହୋଇ

ଜୀବନ ବିତାଉଛୁ ଆଉ ବିତାଇବୁ ତା' ସଭିଙ୍କୁ ଜଣା, ତୁ ପୁଣି ବୟସ୍କ ଲୋକକୁ ଏ ଦଣ୍ଡ ଦେଲୁ ? ଶଳା ହାରାମି ବାଗ୍ରୀ- ହଠାତ୍ ସେ ଉଚ୍ଚାରଣ କଲା ଏବଂ ଘୃଣାରେ ବିଣ୍ଡାଏ ଛାପ ରାସ୍ତା ଉପରକୁ ଛାଟିଦେଲା । ତୋର ଏଡ଼େ ସାହାସ-ତୋ ପୁଅ ତୋତେ ପଚାରୁନି ବୋଲି- ଆମର ବାପ ପ୍ରତି ମର୍ଯ୍ୟାଦା ନାହିଁ, ତୋ'ଘରେ ହଜାର ଟଙ୍କାକୁ ଖଟିଲେ ବୋଲି ।

ଏଇକଥା ଭାବୁଭାବୁ ସେ ଥାନାର ଦୁଆର ମୁହଁରେ ପହଞ୍ଚି ଯାଇଥିଲା ଏବଂ ଦେଖିଲା ବାପାଙ୍କର କରୁଣ, ଅଶ୍ରୁଳ ମୁହଁଟିକୁ । ତା' ଆଖିରୁ ଦୁଇଟୋପା ଲୁହ ଝରିପଡ଼ିଲା ସେହି ଅସହାୟତାକୁ ପ୍ରତ୍ୟକ୍ଷ କରି ।

ପାଖରେ ପହଞ୍ଚି ସେ ଗୁମ୍ ହୋଇଗଲା ଏବଂ ବାପାଙ୍କୁ ଚାହିଁଲା । ବାପା ତାକୁ କିଛି କହିଲେ ନାହିଁ । ବରଂ ଗୋଟାଏ ଅନିଶ୍ଚିତ ସମୟ ଭୟଙ୍କର ହୋଇ ତାଙ୍କ ସାମ୍ନାରେ ଝୁଲୁଥିଲା । କେତେବେଳେ ତୀକ୍ଷ୍ଣ ଅଣୀଟିଏ ହୋଇ ଖସିପଡ଼ିବ ଏଇ କରପଟ୍ ପୋଲିସ୍‌ବାଲାଙ୍କର ତା' ମଧ୍ୟ ସେ ବୁଝିପାରୁନଥିଲେ ।

ସେ ସେହି ବାରଣ୍ଡାରେ ବସିରହିଥିଲେ । ଦିନ ଦ୍ୱିପହରରୁ । ଇନ୍‌ଚାର୍ଜ ଆସିଥିଲେ ମଝିରେ । ପୁଣି ବାହାରି ଯାଇଛନ୍ତି କାମରେ । କନଷ୍ଟେବଲ୍‌ଟି ବସେଇ ରଖିଛି । ଦିନ ଦୁଇଟାରୁ ଆସି ସାଢ଼େ ସାତ ହେଲାଣି । ଦେଉନା କିଛି ହାତଖର୍ଚ୍ଚ କହି ସେ କେତେଥର ହାତପାତି ଦେଲାଣି । ସେମାନଙ୍କ ମୁହଁରେ ପଇସା ଲାଗିଛି । ପ୍ରତିଦିନ କିଛି ନାଁ କିଛି ଝାଡୁଛନ୍ତି । ସେମାନେ କି ବୁଝନ୍ତି ଯେଉଁ ଲୋକଟି ଏଠି ବସି ରହିଛି, କେଉଁ ପରୀପ୍ରେକ୍ଷୀରେ କିପରି ଭାବରେ ମୁହୂର୍ତ୍ତମାନଙ୍କୁ ସାମ୍ନାକରି ବସିଛି । କି ବିକଳ ଦେହ ମନ ଆତ୍ମାଟିଏ ତା'ର ଛଟପଟ ହୋଇଉଠୁଛି ଏଠୁ ମୁକ୍ତି ପାଇବା ପାଇଁ ।

ରିଟାର୍ଡ଼ ଲୋକ ସେ । ପେଟର ଦାୟରେ, ପରିବାରର ଦାୟରେ ଆସି ବେଠି ଖଟୁଥିଲେ ମାରୱାଡ଼ି ଘରେ । ନହେଲେ କି ସଉକି ଥିଲା ଯେ ଏ ବୟସରେ ଏମିତି ନର୍କର ଯନ୍ତ୍ରଣାରେ ପଡ଼ିଥାନ୍ତେ ? ପଇସା ସେ କ'ଣ ଘରୁ ଆଣିକରି ଆସିଥିଲେ ? ବରଂ ସେମାନେ ତାଙ୍କୁ ବାଗ୍ରୀ ଘରୁ ଉଠାଇ ଆଣିଛନ୍ତି । ତାଙ୍କର ମନର ଅବସ୍ଥା କ'ଣ ବୁଝି ନାହାନ୍ତି । ତାଙ୍କର ପରିଚୟ କ'ଣ ଚାହିଁ ନାହାନ୍ତି । ତାଙ୍କୁ କଥା ପଦେ କହିବାର ସୁଯୋଗ ଦେଇନାହାନ୍ତି । ଏବେ ମାଗୁଛନ୍ତି ପଇସା । ଦୁଇ ହଜାର ଟଙ୍କା କାଢ଼, ନହେଲେ ଏମିତି ସେକ୍‌ସନରେ ଠୁକିବୁ ଯେ ସକାଳୁ କୋର୍ଟ ଚାଲାଣ କରିଦେବୁ । ସେତେବେଳକୁ ବୁଝୁଥିବ । ପୋଲିସ୍ ଡିପାର୍ଟମେଣ୍ଟର କି

ସେକ୍ସନ୍ କ'ଣ ସେକଥା ସାଧାରଣ ଲୋକ ଜଣେ କାହିଁକି ବୁଝିବ ? ସେ କ'ଣ କରିଛନ୍ତି ବୋଲି କି ପ୍ରମାଣ ଅଛି ସେମାନଙ୍କ ପାଖରେ । କାହିଁକି ସେମାନେ ତାଙ୍କୁ ଏତେ କଥା କହିବେ ? ମାରଓ୍ୱାଡ଼ି ଚିଠିରେ କେବଳ ତାଙ୍କ ନାଆଁଟା ଉଲ୍ଲେଖ କରିଛି । ପୁଲିସ୍‌ବାଲାଙ୍କୁ ପଇସା ଦେଇଛି କିଛି, ମଦ ପିଇବାକୁ ଦେଇଛି । ଯା ବୋଲି ସେ ଭୋଗିବେ କୁକର୍ମ ତାଙ୍କର ।

ଆଦିତ୍ୟ ଭଦ୍ର । ଆଦିତ୍ୟ ଭୟାଳୁ ମଣିଷ ଜଣେ । କ'ଣ ବା ଯୁକ୍ତି କରିବେ ଏ ସବୁ କଥାର । ସତକୁ ସତ ଯଦି ପୋଲିସ ଆଟ୍ରୋସିଟିଜ୍‌ର ଶିକାର ହୋଇଯା'ନ୍ତି ତାଙ୍କରି ହିଁ କ୍ଷତି ହେବ । ସୌମ୍ୟ ବା କାହାକୁ ଚିହ୍ନିଛି ଏ ସହରରେ ? କେଉଁ ମାନ୍ୟଗଣ୍ୟ ବ୍ୟକ୍ତି ତାକୁ ବା ସାହାଯ୍ୟ କରିବେ ? ପିଲାଟା, ସେ ବା କ'ଣ କରିପାରିବ ? ବରଂ ଚୁପ୍ ହୋଇ ବସିବା ଏ ସମୟରେ ସମୀଚିନ ।

ସେ କନେଷ୍ଟବଲ୍‌ଟିକୁ କହିଲେ- ମୁଁ ସରକାରୀ କର୍ମଚାରୀ ଦିନେ ଥିଲି ତୁମ ପରି । ଅବସର ନେଇଛି । ମୋର ପେନ୍‌ସନ୍ ମାତ୍ର ଅଠରଶହ ଟଙ୍କା । ମୋର ସମ୍ବଳ ନାହିଁ ଏତେ ଯୋଗାଡ଼ କରିବାକୁ । ପୁଅ ତ ବେକାର । କିଏ ଦେବ ଏତେ ଟଙ୍କା ।

ଟଙ୍କା ନାହିଁତ ଆଜି ରାତିଯାକ ବସିଥାଅ । କାମଟା ଶୀଘ୍ର ସାରିଦେବାକୁ ମୁଁ କହୁଥିଲି । ବାବୁଙ୍କ ସାଙ୍ଗର ସେହିକଥା ହୋଇଥିଲା ବି । ଏବେ ଦେଖୁଛି ତୁମ ନିଜଆଡୁ ସବୁ ଭଣ୍ଡୁର କରିବ । କଥା ମାନୁନା । ବୁଢ଼ା ହେଲଣି ।

ଆଦିତ୍ୟ ଚୁପ୍ ହୋଇଗଲେ । ଅପେକ୍ଷା କରୁଥିଲେ ଇନ୍‌ଚାର୍ଜଙ୍କୁ ଆସିବାକୁ । କେତେବେଳେ ଫେରିବେ ତା' ବି କେହି କହୁନଥିଲେ । କେଉଁଠିକୁ ଇନ୍‌ଭେଷ୍ଟିଗେସନରେ ଯାଇଛନ୍ତି । ଆସିବାକୁ ଡେରି । ରାତି ଏଗାରଟା ବାଜିଲା । ହଂସା ଉଡ଼ିଲାଣି । ଶୀତରାତି । ମଞ୍ଜ ଥରିଯାଉଛି । ଆଖିରୁ ଉଡ଼ିଯାଉଛି ଜୁଳୁଜୁଳିଆ ପୋକ । ଆଦିତ୍ୟ ସମ୍ଭାଳି ପାରୁନାହାନ୍ତି । ମନେହେଉଛି ଦେହ ବୁଲେଇ ଯିବକି ? ବ୍ଲଡ଼ ପ୍ରେସର ବଢ଼ିଗଲା କି ? ବଡ଼ ଅଶ୍ୱସ୍ତି ଲାଗୁଛି କାହିଁକି ?

ସୌମ୍ୟ ଦେଖିଲା ବାପାଙ୍କ ମୁହଁ ଶୁଖି ଗଲାଣି । କଥା କହିବାବେଳକୁ ଅସ୍ୱଷ୍ଟ ଲାଗୁଛି । ଅଥଚ ସେ କେଉଁ ଇନ୍‌ଚାର୍ଜ କୁଆଡ଼େ ଗଲା, ତା'ର ଦେଖା ନାହିଁ । କ'ଣ କରିବ ସେ ?

ପୁନଶ୍ଚ କନେଷ୍ଟବଲଟିର ଫୁସଲା ଫୁସୁଲି । କାହିଁକି ଆଉ ଡେରି କରୁଛ ? ଦେଇଦିଅ ଦୁଇ ହଜାର ଟଙ୍କା । ଏଇଟା ଥାନା ନାଁ ଶ୍ୱଶୁର ଘର । ଭଲରେ ଭଲରେ କାମ ସାରିଦିଅ । ନ ହେଲେ ଭାବ କଷ୍ଟିଆ ସେକ୍‌ସନରେ ଠୁକିଦେଲେ ଦୌଡୁଥିବ କୋର୍ଟକୁ । ବୁଢ଼ା ଲୋକ । ତୁମର ଏତେ ଦମ୍ ଅଛି କୋର୍ଟକୁ ଦୌଡିବାକୁ ? ଇଆଡୁ କାମ ସାରିଦେବାଟା ଭଲ ।

ଆଦିତ୍ୟ କିଛି ଉପାୟ ନପାଇ ଡାକିଲେ ସୌମ୍ୟକୁ । କହିଲେ ତୁ ଯା' ସମୀର ଭାଇଙ୍କ ଘରକୁ । ରାତି ଏତେ ହେଲାଣି । ହେଲେ କ'ଣ କରାଯାଏ ? ନୂଆବଜାର ତାଙ୍କ ଘର । ତୁ ତ ଦେଖିଛୁ । ସେ ଏବେ ରିଟାର୍ଡ଼ କରିଛନ୍ତି ପୁଲିସ୍ ଡି:ଏସ:ପିରୁ । କେହିତ ତାଙ୍କର ଚିହ୍ନାଥିବେ । ଯଦି କିଛି ସାହାଯ୍ୟ କରିପାରନ୍ତେ । ମୋର ପରିଚୟ ଦେଇ କହିଲେ ସେ କିଛି ଗୋଟାଏ ବ୍ୟବସ୍ଥା କରିବେ ।

ସୌମ୍ୟର ବାପାଙ୍କୁ ଛାଡ଼ି ଏତେବାଟ ଯିବାକୁ ଇଚ୍ଛା ନଥିଲା । ଏତେ ରାତି । କାଳେ ପୁଲିସ୍ କିଛି ଟର୍‌ଚର୍ କରିବ ? କି ଲକ୍‌ଅପ୍ ରୁମ୍‌ରେ ରଖିଦେବ ? କି ଭରସା ଏମାନଙ୍କୁ ? କେମିତି ରହିବେ ବୁଢ଼ା ଲୋକଟି । ଉଚ୍ଚରକ୍ତ ଚାପ ରୋଗୀ । ଆସିଲାବେଳକୁ ଅଜ୍ଞାନ ହୋଇଯାଇଥିଲେ ଥରେ ।

ରାତି ବଢୁଛି । ନିଃଶବ୍ଦତା ଆସୁଛି ଚାରିପଟରୁ । କଟକ ସହର ସଦା ମୁଖରିତ । ଅଥଚ ଆଜିକାଲି ପୁଲିସ୍ ଦୋକାନ ବନ୍ଦ କରିଦେଇଛି । ଗୁଣ୍ଡା ବଦମାସଙ୍କର ଆଖଡ଼ା ହେଲାଣି ଏ ସହର । କଥାଏ କଥାଏ ଛୁରିମାରି ମଣିଷକୁ ମାରିଦେଉଛନ୍ତି । ତଥାପି ଯିବାକୁ ପଡ଼ିବ ଏତେ ରାସ୍ତା । ସେ ସାଇକେଲ ବୁଲାଇଲା ନୂଆବଜାର ଅଭିମୁଖେ । ହେ ଭଗବାନ ! ସମୀର ଭାଇ କିଛି ଗୋଟାଏ କରିଦିଅନ୍ତୁ । ନହେଲେ ତ୍ରାହି ନାହିଁ ।

ରାତିର ଏ ସମୟରେ ସୌମ୍ୟକୁ ଦେଖି ଆତଙ୍କିତ ହୋଇପଡ଼ିଲେ ସମୀର । ଗାଳିଦେଲେ । କହିଲେ-ଏତେ ସମୟ ଧରି କ'ଣ କରୁଥିଲୁ । ଆଗରୁ ଆସିଲୁନି ।

: ବାପା ତ ଏବେ ପଠାଇଲେ । ଆଗରୁ ଭାବୁଥିଲେ ହଁ-କ'ଣ ପଚାରି ପୋଲିସ୍ ଛାଡ଼ିଦେବ । ହେଲେ ଏମିତି ବସେଇ ରଖିବ ବୋଲି କିଏ ଜାଣିଥିଲା ? କେହି ଆସୁନାହାନ୍ତି କିଛି ପଚାରିବାକୁ । ସେ ବସିରହିଛନ୍ତି । ଇନ୍‌ଚାର୍ଜ କୁଆଡ଼େ ବୁଲୁଛି । ଦୁଇହଜାର ଟଙ୍କା ମାଗୁଛି କନେଷ୍ଟବଲ ।

-ହଉ ତୁ ଯା' । ମୁଁ କଥା ହେଉଛି ସିଟି ଡି:ଏସ:ପିଙ୍କ ସାଙ୍ଗରେ । କହିବୁ ବାପାଙ୍କୁ କାଲି ଆସିବେ ମୋ ପାଖକୁ ।

ସମୀର ପୁଲିସ୍ ଅଫିସର ଥିଲେ ହେଁ ନିଜ ଡିପାର୍ଟମେଣ୍ଟ କଥା ଜାଣନ୍ତି । ମାମୁଁଙ୍କ ପରି ରିଟାର୍ଡ଼, ଭଦ୍ରଲୋକ ଜଣେ କେଉଁ ପ୍ରରୀପ୍ରେକ୍ଷୀରେ ଯାଇ ଏ ଦଶା ଭୋଗିଲେ ଭାବି ସେ ବିଚଳିତ ହୋଇପଡ଼ିଲେ ।



# (୧୪)

ସୌମ୍ୟ ଫେରୁଫେରୁ ରାତି ବାରଟା ହେଲାଣି । ଡିସେମ୍ବର ଶୀତ ରାତି । ବାଲିଯାତ୍ରା ପଡ଼ିଆ ନୀରବ, ନିଃଶବ୍ଦ । ପଡ଼ିଆ ଡେଇଁଲେ ମହାନଦୀ ପଠା । ଦୂର ଅନ୍ଧକାର । ସବୁକିଛି ଏ ମୁହୂର୍ତ୍ତରେ ନିଃଶ୍ଚଳ । ଦଲକାଏ ହେମାଳ ପବନ ଭାସିଆସିଲା ମହାନଦୀ ପଠାଡ଼େଇଁ କେଉଁ ଦୂର ପୃଥିବୀରୁ । ପରିତ୍ୟକ୍ତ ଘାସ ପଡ଼ିଆ ଉପରେ ଝରିଗଲା କେତେ ଶିଶିର ବିନ୍ଦୁ । ପୃଥିବୀର ଆଲିଙ୍ଗନରେ ନିଃଶବ୍ଦ ଆକାଶ । ନଦୀ ପଠାରୁ ଅବା ଭାସି ଆସୁଛି କେଉଁ ଜଣା ଅଜଣା ଶବ୍ଦ । ଭୟଙ୍କର ଶୀତ ରାତି । ଏ ବର୍ଷ ଶୀତ ଜୋର୍‌ରେ ପଡ଼ିଛି । ଏକାକୀ ପାଲଟି ଯାଉଥିବା ମଣିଷଟି ଆଦିତ୍ୟବାବୁ ଆହୁରି ଭୟ ପାଇଗଲେ । ଏଇଠି କ'ଣ ଏ ରାତି ସରିଯିବ ? ସାରାଦିନ ଉପାସ ! ହାର୍ଟର ଔଷଧ ରାତିରେ ଖାଇ ଶୋଇବା କଥା । ଶୋଇବା ସମୟ ଗତ । ବିଶ୍ରାମ ହେଲାନି । ଦେହର ଅବସ୍ଥା କ'ଣ ହେବ, ତାହା ମଧ୍ୟ ଖୁବ୍ ଅନିଶ୍ଚିତ । ହେ ଭଗବାନ ! ଗଣତନ୍ତ୍ରର ଏ ପହରାଦାରକୁ କ୍ଷମା କର । ଶୀଘ୍ର ଏମାନଙ୍କ କବଳରୁ ମୁକ୍ତି ଦିଅ ।

ଆଖି ବୁଜି ହୋଇ ଆସିଲା ତାଙ୍କର । ଅନିଶ୍ଚିତ ଭୟ ସର୍ବାଙ୍ଗରେ । ସୌମ୍ୟ ମଧ୍ୟ ପାଲଟି ଯାଇଛି ଗୋଟାଏ ନିର୍ବାକ ମଣିଷ । ବାହାରେ ଠିଆ ହୋଇଛି ।

ଇନ୍‌ସପେକଟରଟି ଆସିଲା ରାତି ସାଢ଼େ ଗୋଟାଏରେ । ଡାକିଲା ମୃଦୁ ହସି । ସତେ କି ଆନ୍ତରିକତାରେ ଭରା ତା'ର ହୃଦୟ । ଖୁବ୍ ମମତାଭରା । ହୃଦୟବାନ ବ୍ୟକ୍ତି । କହିଲା-ଛ'ଟା ସିଗ୍‌ନେଚର କରିଦେଇ ଯା'ନ୍ତୁ । କାଲି ସକାଳେ ଆଉଥରେ ଆସି ସିଗ୍‌ନେଚର୍ ଦେବାକୁ ପଡ଼ିବ । ଆପଣ ଡି:ଏସ:ପିଙ୍କ ମାମୁଁ ଏକଥା କହିନଥିଲେ କାହିଁକି ?

ଆଦିତ୍ୟଙ୍କ ମୁହଁରେ ହସ ନଥିଲା କି ରାଗ । ପୁଅ ବୟସର ପୁଲିସିଟି । କ'ଣ କହି ତାକୁ ବୁଝାଇପାରିବେ ? ମଣିଷ କେତେ ଅସହାୟ ହେଲେ ଏମିତି ନିର୍ବାକ ପାଲିଟିଯାଏ ? ତା' କ'ଣ ବୁଝିପାରିବ ପୁଲିସ୍ ଚାକିରି କରୁଥିବା ଯୁବକଟି ! ଓଃ ! ଭଗବନାଙ୍କର କେତେ ଯେ କରୁଣା, ଆଜି ରାତିଟା ହାଜତରେ କଟିନାହିଁ । କ'ଣ ଗୋଟାଏ ସେକ୍‌ସନ୍‌ରେ ପକାଇଦେବାକୁ କହୁଥିଲା, ଧମକ ବି ଦେଇଥିଲା ତା' କରିନାହିଁ । ଅନ୍ତତଃ ମୁକ୍ତି ପାଇଛନ୍ତି ଆଜି ଦିନରେ । ହେ ଭଗବାନ ! କେଉଁଠି

ଥିଲ ତୁମେ ! ଧର୍ମ ରୂପରେ ଆସି ଠିଆହେଲ । ରକ୍ଷା କଲ । କେବଳ ତୁମରି କରୁଣାରୁ ଆଜି ମୋର ଏଠୁ ମୁକ୍ତି ହେଲା । ସେ ଅଦୃଷ୍ଟ ଉଦ୍ଦେଶ୍ୟରେ ହାତ ଉଠାଇଲେ ।

ରାତିର କଟକ ସହର । ଶୀତଟା ଜୋର ପଡ଼ିଛି । ଆଦିତ୍ୟ ସୌମ୍ୟର ସାଇକେଲ ପଛରେ ବସିଲେ । ସତେ ଯେପରି ଛୋଟ ପିଲାଟିଏ ହୋଇଯାଇଛି ତାଙ୍କର ମନ । ନ ହେଲେ ନିଜ ପାଖରେ ଏତେ ସଂକୁଚିତ କାହିଁକି ଦେଖାଯାଉଛନ୍ତି ! ମଣିଷ ବିରାଟ ବିପଦରୁ ରକ୍ଷା ପାଇଲାପରେ ଏମିତି ଚୁପ୍ ହୋଇଯାଏ । ନିଜକୁ ଗୋଟେଇ ନିଏ ସକଳ ସୁଖଦୁଃଖର ଅନୁଭବରୁ । ଭଗବାନଙ୍କ ପାଖରେ ନିଜକୁ ସମର୍ପି ଦିଏ ରକ୍ଷା କରିଥିବାରୁ । ଗୋଟାଏ ଉଦାସୀନତା ଛାଇ ଯାଇଛି ତାଙ୍କ ଅସ୍ତିତ୍ୱରେ । ଏମିତି ଗୋଟାଏ କରୁଣ ଅନୁଭବଟିଏ ତାଙ୍କର ସମଗ୍ର ସତ୍ତାକୁ ଆଚ୍ଛନ୍ନ କରି ରଖିଛି । ସେ ବୁଝିପାରିଲେନି ଏତେ ଚୁପ୍‌ଚାପ୍ ସେ ହୋଇଯାଉଛନ୍ତି ଆସ୍ତେ ଆସ୍ତେ । ଯେମିତି ଦୁଇଟି ମୂକ ଏ ରାତିକୁ ଅତିକ୍ରମି ଚାଲିଛନ୍ତି ।

ଗେଟ୍ ପାଖରେ ଶବ୍ଦ ହେଲା । ଅର୍ପିତା ବସିଥିଲା ଜଡ଼ପରି । ଶୀତ ରାତିର ଥଣ୍ଡା ସାଙ୍ଗରେ ଅବା ସେ କାଲୁଆ ଉଠିଯାଇଛି । ଏତେଦିନ ଧରି ସେ ଜୀବନରେ ଏମିତି ଗୋଟାଏ କାତର କରୁଣ ଅନୁଭବ କରିନଥିଲା । ଶବ୍ଦ ହେବା ମାତ୍ରେ ସେ ଚମକି ପଡ଼ିଲା । ଦୌଡ଼ିଗଲା ବାରଣ୍ଡା ଉପରକୁ । ଗୋଟାଏ ଅଜବ ଅବସ୍ଥା ଦେଇ ସେ ଗତି କରୁଥିଲା । ତା' ଛାତି ତଳେ ତୀବ୍ର କୋହ ଜମା ହୋଇ ଆସିଥିଲା । ଆଖିରେ ଲୁହ ଟଳମଳ ହୋଇ ଆସିଥିଲା । ବାଟ ଖୋଜୁଥିଲା ଉଚ୍ଚସ୍ୱରରେ କାନ୍ଦି ଉଠିବାକୁ । ହେଲେ ଏ ଏକ ତ୍ରିଶଙ୍କୁ ଅବସ୍ଥା । ସେ କାନ୍ଦି ପାରିବ ନାହିଁ । ବାପା ଖୁବ୍ ନରମ, ଦରଦୀ, ଭାବପ୍ରବଣ ଲୋକ । ତାଙ୍କର ଧୈର୍ଯ୍ୟ ଚ୍ୟୁତି ହେବ । ତା' ହେଲେ କେମିତି ରୋକିବ ସେ ନିଜର ଲୁହକୁ ? କେଉଁ ଶକ୍ତି ଦେଇ ? କେଉଁ ଶକ୍ତିଟିଏ ମଣିଷ ଭିତରେ ଏ ସମୟରେ ତିଆରି ହେବା ଉଚିତ୍ ଯେଉଁଠି ସେ ପଥର ପାଲଟି ଯିବ ? ମନହେଲା ବାପାଙ୍କ ଛାତି ଉପରେ ଲୋଟିପଡ଼ିବ । ତା'ର ଅଜସ୍ର ଲୁହକୁ ଝରାଇ ଦେବ । କାହିଁକି ଏ ବୟସରେ କଷ୍ଟ ପାଇଲ ପଚାରନ୍ତା ? କେଉଁ ଅପରିଣାମଦର୍ଶିତାର ଫଳ ଏ ହେଲା ? କି ସୁଖ ଆମେ ତୁମକୁ ଦେଲୁ ପ୍ରଶ୍ନ କରନ୍ତା ? ଏତେ ବୟସ ଯାଏ ତୁମ କାନ୍ଧରୁ ଖସିଲା ନାହିଁ ଘରର ଜୁଆଳି । ହାର୍ଟର ଦୁର୍ବଳତାରେ ମଧ୍ୟ ତୁମେ ଘରର ଦାୟିତ୍ୱ ନେଲ । କିଏ ନିଏ ଏମିତି ଦାୟିତ୍ୱ ? ହେଲେ ସେ ପଦଟାଏ ବି କିଛି କହିପାରିଲାନି । କି ଦୌଡ଼ିଯାଇ ତାଙ୍କ ଛାତିରେ ଲାଗି ପାରିଲା ନାହିଁ ।

ଦେଖିଲା ବାପାଙ୍କ ଦେହରେ ସୁଇଟର ନାହିଁ । ଶୀତରେ କୁଙ୍କୁରି ଯାଉଛନ୍ତି । ସେ ଦୌଡ଼ିଯାଇ କେବଳ ଠିଆ ହୋଇଗଲା ସାମ୍ନାରେ । ଚାହିଁଲା ଅପମାନରେ

କଳା ପଡ଼ିଯାଇଥିବା ସେହି ମୁହଁଟିକୁ କେବଳ । କି କରୁଣ ସେ ମୁହଁ । ଗୋରା ଚକ୍‌ଚକ୍ ସୁନ୍ଦର, ଦିବ୍ୟ ଚେହେରା କି ମଳିନ ! ସେ ନିଜକୁ ଚାପି କପଟ ରାଗ ପ୍ରକାଶ କଲା-ଦିନଯାକ ଖାଇନା । ଆସିଲ, ଶୀଘ୍ର ଖାଇବସ । ମାରୱାଡ଼ିଟାର ଟିକେ ବିଚାର ବୁଦ୍ଧି ନାହିଁ । ବହେ ଗାଳି ଗୁଲଜ ସେ କଲା । ହେଲେ ଦେଖିଲା ବାପା ନିରୁତ୍ତର । ମଣିଷର ଦୁଃଖ କେତେ ହେଲେ ଏମିତି ସ୍ତବ୍ଧ ପାଲଟିଯାଏ ସେ !

ସେ ରୋଷେଇ ଘରକୁ ଯାଇ ବାପାଙ୍କ ପାଇଁ ରୁଟି, ତରକାରୀ ନେଇ ଆସିଲା । ବାପା ଗୋଡ଼ ହାତ ଧୋଇ ପ୍ୟାଣ୍ଟ, ସାର୍ଟ ବଦଳାଇ ଡାଇନିଂ ଟେବୁଲ ପାଖକୁ ଆସିଲେ । ବସିଥିଲେ ଖୁବ୍ ଅନ୍ୟମନସ୍କ ହୋଇ ।

ସୌମ୍ୟ ଭିତରକୁ ଡାକି ଅର୍ପିତାକୁ ସମସ୍ତ ବୃତ୍ତାନ୍ତ କହିଥିଲା । ସେ ସବୁକୁ ଆଡ଼େଇ ଅର୍ପିତା ଆସି ଠିଆ ହେଲା ବାପାଙ୍କ ସାମ୍‌ନାରେ । ବୁଝାଇବାକୁ ଚେଷ୍ଟା କଲା-ହଁ...ଏମିତି ଖରାପ ସମୟ ପଡ଼ିଥାଏ ବେଳେବେଳେ । ସେଥିପାଇଁ ଡରିବାର ନାହିଁ । ତୁମର ଏଡ଼େ ସୁନ୍ଦର ମୁକ୍ତାପରି ଅକ୍ଷର, କେଉଁ ଫ୍ରଡ଼ ସିଗ୍‌ନେଚ୍‌ର ସାଙ୍ଗରେ ମିଶିବ ? ମିଥ୍ୟା ଆରୋପ କରିଦେଲେ କ'ଣ ସବୁକିଛି କରିଦେବ ?

ସୌମ୍ୟ ଚୁପ୍ ଚୁପ୍ କହିଲା-ଫରେନ୍‌ସିକ୍ ଲାବୋରାଟୋରୀରେ ସେମାନେ କ'ଣ ବଦଳାଇ ଦେବେ କି ? ଭୁଲ୍ ରିପୋର୍ଟଟାଏ ଦେବେ କି ? ଦୁଃଷ୍ଟ ଲୋକଙ୍କୁ କି ବିଶ୍ୱାସ ?

-ନାଁ...କେଉଁ ଦୁଃଷ୍ଟ କିଛି କରିପାରିବ ନାହିଁ । ଧର୍ମବୋଲି କିଛି ଗୋଟାଏ ଅଛି । ସେ ହିଁ ତୁମକୁ ରକ୍ଷା କରିବ । ଯେମିତି ଆଜି କଲା । ଟିକିଏ ହଇରାଣ, ହରକତ ହେଲେ ବି ମଣିଷ, ପୁଣି ସବୁ ଠିକ୍ ହୋଇଯାଏ । ତା' ହେବ । ଏତେ ବ୍ୟସ୍ତ ହେବା ଦରକାର ନାହିଁ ।

ବାପା ବସିଥିଲେ ସେମିତି । ପାଟିକୁ ରୁଟି ମଧ୍ୟ ନେଇନଥିଲେ । କ'ଣ ଭାବୁଥିଲେ କେଜାଣି ? ଜୀବନର ଏଇ ଅସ୍ତବେଳାରେ କାହିଁକି ଏମିତି ଚରମ ଅପମାନଟାଏ ମିଳିଲା ତାଙ୍କୁ ?

ବାପା ଚାଦର ଘୋଡ଼ିହୋଇ ନଥିଲେ । କେମିତି ଅନ୍ୟମନସ୍କ ଲାଗୁଥିଲେ । ସେ ଚାଦରଟାଏ ନେଇ ବାପାଙ୍କ ଦେହରେ ବେଢ଼େଇ ଦେଲା । ରୁଟି ଦୁଇଟା ଶୁଖି ଯାଇଥିଲା । ବାପା ନୀରବରେ ବସିଥିଲେ । କେଜାଣି କାହିଁକି ମନେହେଲା ତାଙ୍କ ଛାତି ଉପରେ ମଥାରଖି ବହୁତ କାନ୍ଦନ୍ତା କି ? ଏତେ ବୟସ ପରେ ଆଜି ତା'ର କାହିଁକି ଏମିତି ମନେ ହୋଇଥିଲା ? ତାଙ୍କ ଛାତି ଭିତରେ ଯେଉଁ ଏତେ ବ୍ୟଥା, ଅପମାନର ସମୁଦ୍ରଟାଏ ତିଆରି ହୋଇଯାଇଥିଲା, ଯେଉଁ ଦୁଃଖଦ ମୁହୂର୍ତ୍ତଗୁଡ଼ିକ

-ଜମାଟ ବାନ୍ଧି ରହିଥିଲା, ତାକୁ ଉଡ଼େଇ ଦେବାକୁ ତା'ର ଦରଦୀ ମନଟିଏ ହଠାତ୍ ଜାଗି ଉଠିଲା ? ହେଲେ ସେହି ଦରଦ ଯେ ବାପାଙ୍କ ଆଖିରେ ଅଜସ୍ର ଲୁହ ପାଲଟିଯିବାର ଭୟରେ ସେ ପଥର ପାଲଟି ଯାଉଥିଲା ।

ବରଂ ସେ ହସ ଫୁଟେଇ କହିଲା- ବାପା, ଖାଇଦିଅ । ରାତି ଅନେକ ହେଲାଣି । କ'ଣ ହୋଇଛି କି ତୁମର ? କିଛି ହୋଇନି । ସବୁ ଠିକ୍ ହୋଇଯିବ । କାଲି ସକାଳୁ ଭାଇ ଆସିଯିବେ ଗାଁରୁ । ସୁଜୟ ଆସିବ । ଦୀପୁ ଆସିବ । ଆମେ ସମସ୍ତେ ଠିଆ ହୋଇଗଲେ ତୁମକୁ ଆଉ କି ଡର ? ମାରଓ୍ୱାଡ଼ିର କିଏ ଅଛି କହିଲେ ? ଏକମାତ୍ର ପୁଅ ତ ପଚାରୁନି । ନିଃସଗତାରେ ଖୁଟ୍‌ଖଟ୍ ହୋଇ ଜୀଇଁଛି । ହେଲେ ତୁମେ କେଉଁ ଦୃଷ୍ଟିରୁ ଅସୁଖୀ ? ତୁମେ ବରଂ ଗୋଟାଏ ଅଭାବରେ ବଞ୍ଚିଛ, ପଇସା ପତ୍ର କମ୍ ଅଛି । ହେଲେ ତୁମ ଚାରିପାଖରେ ଭଦ୍ର ସନ୍ତାନମାନେ ଅଛନ୍ତି । ପଇସା ନ ଥାଉ । ସେ ଦୃଷ୍ଟିରୁ କ'ଣ ତୁମେ ଭାଗ୍ୟବାନ ନୁହଁ ।

ବାପା ଏଥର ଚାହିଁଲେ ତା' ମୁହଁକୁ । "ହଁ...ମା । ସେହି ଦରଦଟିଏ ତୋ ଭିତରେ ଅନ୍ୟ ଭାଇମାନଙ୍କ ଭିତରେ ରହିଛି । ଅଜୟଟା ବି ଭାରି ଡରୁଆ । କାନ୍ଦି କାନ୍ଦି ଆସି ପହଞ୍ଚିଯିବ । ରାଜନୀତି କଲେ ବି ପରୋପକାରୀ । ସଚ୍ଚୋଟ । ଏତେ ଲୋକଙ୍କ ସାଙ୍ଗରେ ମିଶି, ଟାଉଟରଙ୍କୁ ଦେଖିଲେ ବି ମୋର ମର୍ଯ୍ୟାଦା ବୁଡ଼ାଇନି । ସେହି ମୋର ଆଶ୍ୱସ୍ତି । ମୋର ଆଉ କୌଣସି ଶୂନ୍ୟତା ନାହିଁ । ମୁଁ ପରିପୂର୍ଣ୍ଣ । ଦୁଃଷ୍ଟ ଲୋକାଟାଏ ସେ । କେବଳ ପଇସାକୁ ଚିହ୍ନେ । ମଣିଷକୁ ଶ୍ରଦ୍ଧା କରିଥିଲେ ଆଜି କାହିଁକି ତା' ବିଚାର ବୁଦ୍ଧି ହରାଇଥାନ୍ତା । ଯାହା ତୁ କହିଲୁ-ମୋର ଯାହା ଅଛି ତା'ର ବା କେଉଁ ଅଛି ? ପ୍ରତିଟି ମୁହୂର୍ତ୍ତରେ ସେ ମରୁଛି ନିଃସଙ୍ଗତାରେ । ପୁଅର ଅକଥନୀୟ ଅସହ୍ୟ ବ୍ୟବହାରରେ। ତୁମମାନଙ୍କୁ ନେଇ ମୁଁ ଧନ୍ୟ । ଆଉ କିଛି ଦୁଃଖ ନାହିଁ। କ'ଣ ହେବ କାଲି ସକାଳକୁ ଦେଖିବା । ସମୀର ଭାଇ ବି ଅଛନ୍ତି । ସେ ବୁଝିବେ ।"

ବାପାଙ୍କ ଛାତିତଳୁ ଯେ ଭାରଟାଏ ଖସିଗଲା ସେଥିରେ ଅର୍ପିତା ଖୁସୀହୋଇ ବାପାଙ୍କ ଛାତିରେ ଲାଗିଗଲା । ମନେମନେ ଉଚ୍ଚାରଣ କଲା ବାପା...ବାପା... । ତା' ଆଖିରୁ ଲୁହ ଏବେ ଝରିଯିବାରେ କୌଣସି ବାଧା ବନ୍ଧନ ନାହିଁ ।



**ସଂଯୁକ୍ତା ମହାନ୍ତି**

ଜନ୍ମ- ୧୯୫୭
ଗ୍ରା:ପୋ:ଅ- ବୋରିକିନା
ଜିଲ୍ଲା- ଜଗତ୍‌ସିଂହପୁର
ପିତା- ଶ୍ରୀଯୁକ୍ତ ରାଧାଚରଣ ମହାନ୍ତି
ମାତା-ଶ୍ରୀମତୀ ଚୁନଲତା ମହାନ୍ତି
ଶିକ୍ଷା- ସ୍ନାତକୋତ୍ତର (ଉଦ୍ଭିଦ ବିଜ୍ଞାନ)
୧୯୭୮ ମସିହା,ରେଭେନ୍‌ସା କଲେଜ
ବୃତ୍ତି- ପ୍ରବଂଧକ, ସେଣ୍ଟ୍ରାଲ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ

**ପ୍ରକାଶିତ ପୁସ୍ତକ**

୧. ନୀଳ କୁହୁଡ଼ିର ରାତ୍ରି (କବିତା ସଂକଳନ-୧୯୯୬)
୨. ଉତ୍ତରା ଝର୍କା (କବିତା ସଂକଳନ-୨୦୦୫)
୩. ସମୁଦ୍ରର ଶୋଷ (ଗଳ୍ପ ସଂକଳନ-୧୯୮୮)
୪. ସବୁଜ ଦ୍ୱୀପର ବାସ୍ନା (ଗଳ୍ପ ସଂକଳନ-୧୯୯୮)
୫. ଜହ୍ନ ରାତିର ନିଶା (ଗଳ୍ପ ସଂକଳନ-୨୦୦୨)
୬. ବର୍ଷାର ସଂଗୀତ (ଗଳ୍ପ ସଂକଳନ-୨୦୦୩)
୭. ଉତ୍ତର ଦାୟାଦ (ଗଳ୍ପ ସଂକଳନ-୨୦୦୩)
୮. ମରୁଝଡ (ଗଳ୍ପ ସଂକଳନ-୨୦୦୪)
୯. ସବୁଜ ଅଂଧାର (ଉପନ୍ୟାସ-୧୯୯୮)
୧୦. ସମ୍ମୁଖେ ରହିଛି ପଥ ବହୁଦୂର (ଉପନ୍ୟାସ-୨୦୦୫)
୧୧. ଦାୟବଦ୍ଧ (ଉପନ୍ୟାସ -୨୦୦୫)
୧୨. ହିନ୍ଦୀ ଅନୁବାଦର ପ୍ରକାଶିତ ଗଳ୍ପ ସଂକଳନ
ପଥର କି ଅହଲ୍ୟା (୨୦୦୩)(ଯାତ୍ରୀ ପ୍ରକାଶନ, ନୂଆଦିଲ୍ଲୀ)

**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**